# ବିଷାଦ
# ଏକ
# ଋତୁ

ଭାନୁଜୀ ରାଓ

ପ୍ରକାଶକ :
କାହାଣୀ ପ୍ରକାଶନୀ
କଲ୍ୟାଣୀନଗର ■ କଟକ - ୭୫୩୦୧୩
ପ୍ରଥମ ପ୍ରକାଶ: ■ ୧୯୭୩
ଦ୍ୱିତୀୟ ମୁଦ୍ରଣ: ■ ୧୯୯୫
ପ୍ରଚ୍ଛଦପଟ :
ଅସିତ ମୁଖାର୍ଜୀ
ଅକ୍ଷର ସଜ୍ଜା :
କଲ୍ୟାଣୀ କରୁଣା
ଅରୁଣୋଦୟ ମାର୍କେଟ ■ କଟକ-୧୨
ମୁଦ୍ରଣ :
ଜଗନ୍ନାଥ ପ୍ରସେସ୍
ତୁଳସୀପୁର ■ କଟକ
ମୂଲ୍ୟ :
ଟ ୪୫.୦୦ [ ପଇଁଚାଳିଶ ଟଙ୍କା ମାତ୍ର ]

କାହାଣୀ

BISADA EKA RUTU
by : Bhanujee Rao
Published by : Kahani Prakashan,

Kalyani Nagar, Cuttack - 13,
Published : 1995
Price : Rupees FORTYFIVE Only

ଦୁଇଟି ନଦୀ,
ଗୋଟିଏ ବୁଢ଼ା ବରଗଛ
ଓ
କତିପୟ ନାରୀଙ୍କୁ...

ଭାନୁଜୀ ରାଓ




ତୁମକୁ ॥ ୯
ଠେଲି ଠେଲି ବାଲି ॥ ୧୦
ରାତିର ଆକାଶ ॥ ୧୧
ବୈଶାଖ (୧) ॥ ୧୨
ଶିଳ୍ପୀ ॥ ୧୩
ସାଧବପୁଅ ॥ ୧୪
ବିନୋଦିନୀ ॥ ୧୫
ପ୍ରତୀକ୍ଷା ॥ ୧୭
ଛାଇ ॥ ୧୮
ବୈଶାଖ (୨) ॥ ୧୯
ନିବେଦନ ॥ ୨୦
ସ୍ୱପ୍ନମହଲ ॥ ୨୨
ରାତି ॥ ୨୪
ରବିବାର ॥ ୨୫
ଅନ୍ୱେଷଣ ॥ ୨୬
ରାତି-ଦିନ ॥ ୨୭
ଅସମାପ୍ତ ॥ ୨୮
ସାଗରକନ୍ୟା ॥ ୩୦
ତୁମକୁ ମୁଁ ॥ ୩୨
ପ୍ରଶ୍ନ ॥ ୩୪
ଚନ୍ଦ୍ରେଇ ॥ ୩୫
ମୁହଁ ॥ ୩୬
ସ୍ୱଗତୋକ୍ତି ॥ ୩୭
ଭାବନା ॥ ୩୮
ଅଭିସାର ॥ ୩୯
ହେ ସହର, ହେ ମୋର ସହର ॥ ୪୦

ଐନ୍ଦ୍ରଜାଲିକ ॥ ୪୨
ଦୀଘା ॥ ୪୩
ସାମୁଦ୍ରିକ ॥ ୪୪
ଗୋଟିଏ ଦିନର ବସନ୍ତରେ ॥ ୪୫
କାଠଯୋଡ଼ି ॥ ୪୬
ସ୍ୱୀକୃତି ॥ ୪୮
ପୂର୍ଣ୍ଣିମା ॥ ୪୯
ପୂର୍ଣ୍ଣିମା ତିଥିର ଜହ୍ନ ॥ ୫୦
ଝଡ଼ର ଶେଷ ॥ ୫୨
ମଲା ନଦୀ: ସବୁଜ ପୃଥିବୀ ॥ ୫୪
ସଭା ଓ ସମୁଦ୍ର ॥ ୫୬
ଆକାଶ ଯାଇନି ସରି ॥ ୫୭
ବାଟଚଲା ଶେଷ ହେଲା ॥ ୫୯
ବସନ୍ତ ରାତିରେ ॥ ୬୦
ଝଡ଼ ॥ ୬୧
ମାୟାବୀ ସକାଳ ॥ ୬୩
ସମୁଦ୍ର ମୋ ମୁହାଁମୁହିଁ ॥ ୬୪
ମାଛ ॥ ୬୫
ବୁଢ଼ାଟି ॥ ୬୬
କୋଣାର୍କ ॥ ୬୭
ଶିକାର ॥ ୭୦
ଜହ୍ନ ॥ ୭୧
ଜାନୁୟାରୀ ପହିଲା, ୧୯୫୯ ॥ ୭୨
ପାପୁପାଇଁ ଯିଏ ସମୁଦ୍ର ଦେଖିନାହିଁ ॥ ୭୩
ଦେହର ଠିକଣା ॥ ୭୫
ପରଶ ॥ ୭୬
ପ୍ରେମ ॥ ୭୭
ନାମଟି ତାର ॥ ୭୮
କାମନା ॥ ୭୯
ବାହୁଡ଼ା ॥ ୮୦

ସ୍ତନ ॥ ୮୧
ଗାନ୍ଧିଜୀ ॥ ୮୩
ମ୍ୟାଗ୍ନୋଲିଆ ॥ ୮୫
ବିହଙ୍ଗ-ହେ ବିହଙ୍ଗ ॥ ୮୬
ପ୍ରାପ୍ତି ॥ ୮୭
ଝଡ଼, ତୁମେ ଆଉ ମୁଁ ॥ ୮୮
ନଦୀ, ନାରୀ ଓ ନକ୍ଷତ୍ର ॥ ୮୯
ଭାରତବର୍ଷ ॥ ୯୧
ଆକାଶର ଭୟ ॥ ୯୨
ଧୂସର ହେମନ୍ତ ॥ ୯୩
ଅନ୍ଧକାର ॥ ୯୪
ନିର୍ଜନତା ଓ ମୁଁ ॥ ୯୫
ହୁଏତ ॥ ୯୭
ମିନତି ॥ ୯୮
ଶୀତ ॥ ୯୯
ପ୍ରାର୍ଥନା ॥ ୧୦୦
ଜୀବନ ॥ ୧୦୨
ବର୍ଷା ॥ ୧୦୩
ଅନ୍ଧକାରର ସ୍ତବ ॥ ୧୦୫
ସୂର୍ଯ୍ୟ ॥ ୧୦୬
ସ୍ୱଗତ ॥ ୧୦୮
· ବାରଟା ରାତି ପରେ ॥ ୧୧୧
ମହାତ୍ମା ସ୍ମରଣେ ॥ ୧୧୩
ପୂର୍ଣ୍ଣମୀ, ମୋ ରକ୍ତ ଭିତରେ ॥ ୧୧୬
ଦଗ୍ଧ ଡାୟରୀ ॥ ୧୧୭
ମାଗୁଣି ॥ ୧୧୮
ଭଙ୍ଗା ମାସ୍ତୁଲ ॥ ୧୧୯
ସାବୁନ ॥ ୧୨୧
ଦିନେ ଦିନେ ॥ ୧୨୩

# ତୁମକୁ

ଆକାଶରେ ରଙ୍ଗ ମେଘର ମୁରୁଜ,
ଦିନର ଆଲୁଅ ନିଭି ନିଭି ଆସୁଛି ।
ବାଲିର ଝଡ଼—
ଧୂସର ଧରିତ୍ରୀ ରାତ୍ରିର ପ୍ରତୀକ୍ଷା କରୁଛି ।

ହେଇ ! ମେଞ୍ଚାଏ ତାରା ବିଞ୍ଚିହୋଇ ପଡ଼ିଲା,
ଜହ୍ନ ଉଇଁଲାଣି, ମୁହଁରେ ତାର ଧଳା ଛଉର ଦାଗ ।
କଣ ଦେଖୁଛ ? ମୋତେ ? ମୋର ସବୁ !
ଅତୀତ ଆଉ ଭବିଷ୍ୟତ ।
ନୂଆ ଜୀବନର ପ୍ରଚ୍ଛଦ-ପଟ ଆଙ୍କୁଛ,
ତାରାର ଦୀପ୍ତି ଆଉ ଆକାଶର ତେଲ-ରଙ୍ଗ ମିଶାଇ ?
କିନ୍ତୁ ଏଇ,
ପାଉଁଶିଆ ଅନ୍ଧାର,
ବାଲିର ଝଡ଼,
ବଡ଼ କିମ୍ଭୂତ, ବଡ଼ କିମାକାର—
କିଛି ଯେ ଦିଶୁନାହିଁ,
ମୁଁ ବି ଅସ୍ପଷ୍ଟ ହୋଇ ଆସୁଛି ।

ତୁମର ଆଖିର ଆରଶିରେ କାହିଁ,
ମୋର ପ୍ରତିବିମ୍ବ ଆଉ ପଡୁନାହିଁ ?

ମୁଁ ଆଜି ରିକ୍ତ, ଜୀର୍ଣ୍ଣ— କ୍ଳାନ୍ତ
ଆଉ କ୍ଳେଦାକ୍ତ କ୍ଷତର ସମଷ୍ଟି ।
ମନ ମୋର ଆତ୍ମହତ୍ୟା କରିଛି ବହୁ ଦିନୁଁ,
ତୁମକୁ ଚିହ୍ନୁ ଚିହ୍ନୁ
ନିଜେ ହଜିଛି, ସରିଛି,
ବାକି ନାହିଁ କିଛି ।

ତୁମେ ଦୂରକୁ ଘୁଞ୍ଚିଯାଅ, ଦୂରକୁ,
ବହୁତ ଦୂରକୁ,
ଯେଉଁଠୁ ମୋତେ ତୁମେ ଆଉ
ଚିହ୍ନି ପାରିବ ନାହିଁ ।

* * *

# ଠେଲି ଠେଲି ବାଲି

ଠେଲି ଠେଲି ବାଲି, ପାଦେ ଚାଲି ଚାଲି,
ପାଖର ମଣିଷ ଦୂରକୁ ଦୂରକୁ–
ସବୁ ତ ସରିନି; ଦୀପ ତ ନିଭିନି;
ମନେ ପଡୁନି' କି ପୁରୁଣା ସୁରକୁ ?

ଏଇ ତ ସେଦିନ ଆଖିରେ ତୁମର,
ଆବେଗ-ଉଚ୍ଛଳ, ପ୍ରୀତି ଜରଜର
ଦୃଷ୍ଟି ଦେଖିଛି,
ମନର ମୟୂର କେତେ ତ ନାଚିଛି,
ଭୁଲି ତ ହୁଏନି'– ସବୁ ମନେ ଅଛି ।

ପୁଣି ଚୋରାବାଲି, କେତେ ଭୟାନକ,
ଅନ୍ଧାର ଘୋଟିଲା ଦିନ ରତ ରତ ।
ତାରା ଦିଶିଲାଣି, ରାତିର ମେଖଳା
ପଡ଼ିଲାଣି ଖସି
ଏ ଜୀବନଭେଳା
ବୁଡ଼ିବ ସତେ କି ?

ତୁମ ଭୂରୁ ପରି
ସରୁ ଭୀରୁ ଜହ୍ନ,
ଉଇଁ ଆସିଲାଣି ଗୋପନପୁରରୁ
ମନର ମଣିଷ ଦୂରରୁ ଦୂରରୁ ।

ଅସରନ୍ତି ବାଟ କେହି ତ ନାହାନ୍ତି,
ଆଖିରେ ତୁମରି ନୂତନ ପାହାନ୍ତି–

ଆଶା ତ ଅମାପ,
ଜଳେ ଜୁକୁ ଜୁକୁ,
ଦୂରର ମଣିଷ ପାଖକୁ ପାଖକୁ ।

* * *

# ରାତିର ଆକାଶ

ଅକାଶରେ ଛାୟାପଥ,
କିଶୋରୀର ମାଙ୍ଗ ପରି
ଶୁଭ୍ର ଓ ସଳଖ ।
ତଳେ, ଶୁଆ-ରଙ୍ଗର ଧାନକ୍ଷେତ
ବିଶାଳ— ବିସ୍ତୀର୍ଣ୍ଣ,
ତା'ପରେ ଘାସର ଗାଲିଚା
ହଳଦିଆ
ଆଉ ଜୀର୍ଣ୍ଣ ।

ପୁଣି ସପ୍ତର୍ଷିର ପ୍ରଶ୍ନ
ବିରାଟ, ପ୍ରାଚୀନ—
ଉଙ୍କି ଆସିଲାଣି ଚନ୍ଦ୍ର,
ତାରା-ସଭାର ଭିଡ଼ ଠେଲି ଠେଲି,
ପାଣ୍ଡୁର ମ୍ରିୟମାଣ ଚନ୍ଦ୍ର
ଆକାଶରେ ମେଘ ନେଳି ନେଳି ।

❖ ❖ ❖

# ବୈଶାଖ-୧

ଆଜିର ବିଧବା ସନ୍ଧ୍ୟା
ନିସ୍ତେଜ ଓ ଶ୍ୱେତ ।
ବଡ଼ ରିକ୍ତ, ବଡ଼ ଉଦାସୀନ,
ଦେହରେ ତାର ଗେରୁ-ରଙ୍ଗର ଶାଢ଼ୀ ।

ଏଇ ଅପରିଚ୍ଛନ୍ନ ପୃଥିବୀ,
କୁଢ଼ କୁଢ଼ ପାଉଁଶ ଓ ବାଲି,
ଚାଲିବାକୁ ଗୋଡ଼ ଟଳେ
ଝୁଣ୍ଟି ହୁଏ ଖାଲି ।

କିନ୍ତୁ ତା ଅହଲ୍ୟା-ଦେହ
ଅଙ୍କୁରର ପ୍ରତ୍ୟାଶା ବ୍ୟାକୁଳ,
ଆସିବ ଆଷାଢ଼ ପୁଣି
ସ୍ୱପ୍ନ ଦେଖେ ପିଙ୍ଗଳ ମୌସୁମୀ ।
ଅସଷ୍ଟ ଆଶ୍ୱିନ
ଦୂରରୁ ତା ଡାକ ଶୁଭେ—
କ୍ଷୀଣ ଅତି କ୍ଷୀଣ ।

◆ ◆ ◆

# ଶିଳ୍ପୀ

ତୁମେ ଛବି ଆଙ୍କ
କେତେ ରଙ୍ଗର,
ନାଲି, ନେଳି, ହଳଦି,
ଫୁଲ ଆଉ ପ୍ରଜାପତି ।

ତୁମ ଛବି ଇନ୍ଦ୍ରଧନୁ–
ବର୍ଣ୍ଣମୟ, ବିଚିତ୍ର, ବିଶାଳ ।
କିନ୍ତୁ କମଳାରଙ୍ଗର ସକାଳ
ଆଉ ସବୁଜ ସନ୍ଧ୍ୟା ପରି କମନୀୟ ।

ଚଞ୍ଚଳ ମୁହୂର୍ତ୍ତଗୁଡ଼ିକ
ତୁମ ଛବିରେ ବନ୍ଧା ।
ରାତିରେ ଉପତ୍ୟକା,
ଅଗଣିତ ତାରା ଫୁଟେ,
ମେଘ ପାହାଡ଼ ଉହାଡ଼ରେ
ଜହ୍ନ ଲୁଚେ–

ତୁମେ ତାରି ଛବି ଆଙ୍କ,
ନୀରବରେ ହାଇ ମାରି ମାରି,
ତୁମ ଝରକାର ଫାଙ୍କ ବାଟେ
ଜହ୍ନ ମରେ ଆତ୍ମହତ୍ୟା କରି
ତୁମେ ଯାଅ ହାରି ।

* * *

# ସାଧବପୁଅ

କଳାରାତି, ଝଡ଼ ଓ କୁହୁଡ଼ି,
ଧ୍ରୁବତାରା ଗଲାଣି ତ ବୁଡ଼ି,
ସାଧବ ତା' ବାଟ ଯିବ ଭୁଲି ?
ଖାଲି ଝଡ଼, ବଜ୍ର ଓ ବିଜୁଳି

ହେ ସାଧବ, ତୁମର ବୋଇତ,
କେତେ ପାଟ, କେତେ ହାତିଦାନ୍ତ,
ଘେନି ଯାଏ, କେତେ ଦୂରବାଟ ।

ପ୍ରିୟା ତୁମ କୃଷ୍ଣଚୂଡ଼ା ଫୁଲ,
ହେଇ, ଦୂରେ ସୁବର୍ଣ୍ଣ ସିଂହଳ ।

ଆକାଶରେ ତାରା ନାହିଁ,
ଛୋଟ ଛୋଟ ଅନ୍ଧାରର ହାତ
ପାଣି ଆସି ତରୀ ଛୁଏଁ,
ଥରେ ତୁମ ବିରାଟ ବୋଇତ ।

ଜାଭା ଆଉ ବାଲିଦ୍ୱୀପ ଟପି
ଦାରୁଚିନି ଲବଙ୍ଗର ବନ,
ଛାଇ ପରି ସୁମାତ୍ରା ପ୍ରାଚୀନ
ହାତ ଠାରି ଡାକିବ ତଥାପି ।

କେତେ ହୀରା, ନୀଳା ଆଉ ମୋତି
ମାଣିକର ପେଡ଼ି ଘେନି ତରୀ ତୁମ
ଫେରିବ ତ ପୁଣି,
ଛୁଇଁ ଛୁଇଁ ସହସ୍ର ବିପଣୀ ?
ପ୍ରିୟା ତୁମ ପ୍ରୋଷିତଭର୍ତ୍ତୃକା,
ଆଖିରେ ତା ବିପୁଳ ସରମ,
କୁହୁଡ଼ି ଅନ୍ଧାରେ ଦୂରେ ଥରେ ଚେତବନ ।

* * *

# ବିନୋଦିନୀ

ବିନୋଦିନୀ ତୁମେ
ସତେ ଏଡ଼ିକି ଅବୁଝା,
କେତେ ସୁର ହଜିଗଲା
ସରିବନି ତୁମର ଏ ଖୋଜା ?

ଝରକାରେ ଚେନାଏ ଆକାଶ
ନାଲି, ନେଳି, ବାଇଗଣି,
ସବୁଜ ସନ୍ଧ୍ୟା ଆସେ ମାୟାବିନୀ
ମୁହୂର୍ତ୍ତକୁ ଘେନି—
ତା'ଠି ତୁମେ ରଣୀ ।
କିନ୍ତୁ କାହିଁ,
କେହି ଆସେ ନାହିଁ !

ଆଜି ବି ପ୍ରତୀକ୍ଷା ଖାଲି,
ନିଃଶବ୍ଦ ସାମନାର ଗଳି,
କଣ୍ଠସ୍ୱର କାହାର ଶୁଣୁଛ ?
ଲଘୁପାଦେ ଛୁଇଁ ଛୁଇଁ ଅସଂଖ୍ୟ ପାହାଚ
କେହି ଆସେ ନାହିଁ ।

ତୁମେ କ'ଣ ତଥାପି ଭାବିଛ,
ତୁମର ମନର ସେହି କ୍ଷତ,
ଲିଭିଯିବ, ଚିହ୍ନ ବି ନ ଥିବ ?
ଆରଶିରେ ତୁମ ଛାଇ
ବଡ଼ ଫିକା ବଡ଼ ପାଉଁଶିଆ,
ଦେହରେ ବିବର୍ଣ୍ଣ ଶାଢ଼ୀ




ପଟାପଟା ଗାରିଗାରିକିଆ,
କେତେଦିନୁଁ ରହିଛ ଅନାଇ,
ଖାଲି ଦୁଃଖ, କ୍ଷୋଭ ତୁମ ପାଇଁ,
ସେ ଆସିବ ନାହିଁ।

ଏ ଜୀବନ ତୁଚ୍ଛା ଅଭିନୟ,
ସବୁ ମିଛ, ଅଳୀକ ସ୍ୱପନ ?
ଅତୀତର ଯେତେ ଅନୁଭବ,
ଦସ୍ୟୁ ରାତି କରିବ ଗୋପନ,
ଝରାଫୁଲ ମ୍ଳାନ ମଉଳବ।

ଭାଙ୍ଗିପଡ଼େ ସ୍ୱର୍ଗର ନିଶୁଣି,
ଛୋଟ ଛୋଟ ହାତ ତୁମ
ତା'ହାତରେ ଥରିବନି ପୁଣି ?
ହାୟ ବିନୋଦିନୀ !

ତଥାପି ତ ଭୋର ହେବ,
ଜନ୍ମ ନେବ ସୁବର୍ଣ୍ଣ ସକାଳ ।
କଳାକଳା ଆଖି ତୁମ
ଭୀରୁ, କ୍ଳାନ୍ତ, ଅଥଚ କୋମଳ ।

* * *

# ପ୍ରତୀକ୍ଷା

ଆଜି ବି ଆସିନ ତୁମେ
ଖୋଲିବନି ଏ ଦୁଆର ମୋର
ଶୂନ୍ୟ ଘର, ସବୁ ଅନ୍ଧାର ।

ନିଶାଚର ଚଢ଼େଇଟି ପରି
ଆସିବନି ସତେ ତୁମେ
ଡେଣା ମେଲି ପହଁରି ପହଁରି
ଡାକିବନି ଥରି ଥରି,
ଝରକାରେ ଥଣ୍ଟ ମାରି ମାରି ?

ସ୍ୱପ୍ନ ଦେଖେ ସବୁଦିନ
ମନର ପ୍ରାଙ୍ଗଣ ମୋର ଭରିଦିଏ
କୁନ୍ତଳ ତୁମର
କେଡ଼େ କଳା କେଡ଼େ ଚିକ୍କଣ !

କେତେ ଦିନ ଗଲାଣି ତ ବିତି
କେତେ ସନ୍ଧ୍ୟା ସକାଳ ଓ ରାତି ।

ହାଇ ମାରେ ରାତିର ଆକାଶ,
ଭୋର ହେବ, ସମୟ ବା କାହିଁ ?
ଦେଖ ଆସି ମୋର ନିଃଶ୍ୱାସ
ଆଉ ପଡୁନାହିଁ ।

ମାଗିଥିଲ ମୋତେ ଯାହା
ତାହା କଣ ଆଜି ତୁମେ ନେବ ?
ରୁଧିରାକ୍ତ ଏହି ମୋର ଶବ,
ରଖିଗଲି ସେ ତୁମରି ପାଇଁ ।

ତଥାପି ଆସିନ ତୁମେ
ମୁଁ ଗଲିଣି ମରି,
ମ୍ଳାନ ଦିଶେ କୁଆଁତାରା,
ରାତି ଆସେ ସରି ।

* * *

# ଛାଇ

କେତେ ଛାଇ
ଦୂରେ ଥାଇ
ହାତ ଠାରି ଡାକେ
କେତେ ସନ୍ଧ୍ୟା ରାତି ହୁଏ,
ଆଶା ମୋର ତାରା ହୋଇ ଫୁଟେ
କେଉଁ ମାୟାଲୋକେ ।

ପୁଣି କେତେ ଝରିପଡ଼େ
ଆକାଶର ଅଗଣାରେ ନିତି
ଧୋବ ଧୋବ ମେଘ ମାଛକାତି,
ହସେ ଜହ୍ନରାତି ।

ତୁନି ତୁନି କଥା କେତେ
ସୁର ହୋଇ ସ୍ମୃତି ଝରକାରେ,
ଆସେ ପୁଣି ଫେରିଯାଏ
ଛାଇ ପଡ଼େ ମନ ପରଦାରେ ।

ଅଶ୍ରୁ ସବୁ ପୁଲକର ପାରାବାରେ
ମିଶି ହୁଏ ଲୀନ,
ଆନନ୍ଦର ଢେଉ ଉଠେ
ବେଦନାର ଦାଗ ଦିଶେ
ମ୍ଳାନ ଆଉ ପାଣ୍ଡୁର—ମଳିନ ।

ନିଦ୍ରା ମୋର ସ୍ୱପ୍ନ ହୋଇଯାଏ
ଇନ୍ଦ୍ରଧନୁ ବର୍ଣ୍ଣରେ ବିହ୍ୱଳ;
ସ୍ନେହ, ପ୍ରେମ, ମମତାରେ
ଏ ପୃଥିବୀ ସ୍ୱର୍ଗ ସମତୁଲ,
ବଞ୍ଚିବାକୁ ମୁଁ ଯେ ଭଲପାଏ ।

* * *

# ବୈଶାଖ-୨

ତମ୍ବା ରଙ୍ଗର ଆକାଶ,
ଝରିପଡ଼େ ନିଆଁ ଓ ପାଉଁଶ
ପୀତସୂର୍ଯ୍ୟର ଉପତ୍ୟକା,
ଦୂର ଆକାଶରେ ଧୂସର ଚିଲ ଅଙ୍କା–

ମୃତ୍ୟୁ-ନୀଳ ମୁହୂର୍ତ୍ତର
କ୍ଲାନ୍ତ ପଦକ୍ଷେପ ,
ଶୁଣୁଛି ଦଗ୍ଧ ପୃଥିବୀ
ଦେହରେ ତା କୁହ୍ଲ କୁହ୍ଲ ଅଙ୍ଗାର-ବିଭୂତି ।

ମୁଠା ମୁଠା ଉତ୍ତାପ ଓ ଧୂଳି,
ଫେରି ଆସେ ବିବର୍ଣ୍ଣ ଗୋଧୂଳି ।
ପଲ ପଲ ପୋକ ଆଉ ମାଛି,
କଳା ଡେଣା ଶାଗୁଣା ଉଡୁଛି,
ନଖରେ ଧରିତ୍ରୀର ହୃତ୍‌ପିଣ୍ଡ,
ଛିନ୍ନଭିନ୍ନ ଖଣ୍ଡ ଓ ବିଖଣ୍ଡ

କାଳରାତ୍ରିର ଚରା
ମଲାଜହ୍ନର ଚିତା ଜଳେ
କ୍ଲୀବ ବସୁନ୍ଧରା ।

* * *

# ନିବେଦନ

ତୁମେ ମୋତେ ଭୁଲିଯାଅ,
ରାତିର ଦୁଃସ୍ୱପ୍ନ
ଦସ୍ୟୁ ପରି ଲୁଟି ନେଇ ସ୍ମୃତିର ଫସଲ ।
ମନର ଗହନ ମୋର
ପୋଡ଼ିଦେଇ ଦୁରନ୍ତ ଅନଳ ।

ପଉଷର ଶୀତ
ତାରାହୀନ ରାତିର ଆକାଶ,
ଧୂଳି ହୋଇ ଭାଙ୍ଗିପଡ଼େ ଆଶାର ପାହାଡ଼,
ମୋ ହାତରେ ହାତ ଦିଅ
କଣ ପାଅ ?
ଖାଲି ହାଡ଼—ହାଡ଼ ।

ମନେପଡ଼େ କେତେ ରାତି
ଶଙ୍ଖ ମଲମଲ,
ତୁମେ କୁହ, ଯିବା ଚାଲ ଚାଲ,
ଉଡ଼େ ତୁମ ଚୂନା ଚୂନା ବାଳ,
କଳା ଓ କୋମଳ ।

ବହୁଦୂର ଯିବାକୁ ତ ହେବ,
କେତେ ଛକ, କେତେ ନୂଆ ବାଙ୍କ,
କେତେ ଗଳି ଚପି ଚପି ମୋତେ ତୁମେ ନେବ,
ଜହ୍ନ ଲୁଚେ,
ଧୂଆଁ ଧୂଆଁ ମେଘ ।

ତୁମେ ଜାଣ ଏ ପୃଥିବୀ
ନୁହେଁ ସମତଳ,
ଚାଲିବାକୁ ଝୁଣ୍ଟି ହୁଏ
ପାଦ ଟଳମଳ
ଅସରନ୍ତି ଢିପ ଆଉ ଖାଲ ।

ଇନ୍ଦ୍ରଧନୁ ଭାଙ୍ଗିଗଲା,
କ୍ଷତ-ଦୁଷ୍ଟ ଚନ୍ଦ୍ରର କପୋଳ,
ଶୂନ୍ୟେ ଉଡ଼େ ପେଚକର ଡେଣା
ଅଟ୍ଟହାସ କରେ ପ୍ରେତଦଳ ।

ନିଛାଟିଆ ରାତି
ଉଷର ବାଲିର ଚରା,
ହାତ ମୋର ଛାଡ଼ିଦିଅ
ମୋତେ ତୁମେ ଭୁଲିଯିବ ପରା !

✲ ✲ ✲

# ସ୍ୱପ୍ନ-ମହଲ

ଆକାଶରେ ଶୁଭ୍ର ପାରାବତ,
ସୁଷମାରେ ଦେହ ତାର ସ୍ନାତ ।
ପ୍ରବାଳର ଥଣ୍ଟ,
ଉଡ଼ିବୁଲେ ଏପଟ ସେପଟ ।
ସୁନା ସୁନା ମେଘ ଡେଣାଁ ପୁଣି,
ଭାଙ୍ଗି ଭାଙ୍ଗି ସହସ୍ର ଲୋଟଣି,
କେତେ ଦୂର ଯିବ ସେ ପହଁରି
ଯେଉଁଠି ଲାବଣ୍ୟ ପରୀ
ଦେହ ମାଜେ—ନୀଳିମା ପୋଖରୀ ।

କ୍ରମେ ରାତି ହେବ
ଆଖିରେ ତା' ତାରାର ପ୍ରଦୀପ,
ମନର ମୁହାଁଣ ମୋର
ଭରିଦିଏ ଜହ୍ନର ଜୁଆର ।

ସେଠି ଅଛି ମମତାର ଦ୍ୱୀପ,
କୃଷ୍ଣଚୂଡ଼ା, କେତକୀ ଓ ନୀପ,
ଉଲ୍ଲସିତ ସ୍ତବକରେ ନିତି—
ପର ଝାଡ଼େ ସରଗ କପୋତୀ ।

ହେ କପୋତ, ସେଠି ମୋର ଘର,
ମରକତ ପାହାଚ ତା, ସ୍ଫଟିକ ଦୁଆର,
ଝରକାରେ ମୁକୁତା ଝାଲର,
ହୀରାନୀଳା ଖଞ୍ଜା କାନ୍ଥ-ବାଡ଼ ।

ସପନର ପୁରୀ ମୋର
ମହଲ ଯେ ସାତ,
ଝରକାରେ ମେଘ ଆତଯାତ ।

କୁହୁକରେ ଗଢ଼ା ମୋର ପୁରୀ,
କେତେ ଶୁଆ କେତେ କେତେ ସାରୀ,
ଅଗଣିତ କୋଇଲିର କୁହୁ,
ମୟୂରୀର କେକା,
ଆଉ କପୋତୀ କୂଜନ ବହୁ ବହୁ ।

ସେଠି ଯେଉଁ ହୀରକ ମୀନାର
ପାଦରେ ତା ମଥା ପିଟେ ସବୁଜ ସାଗର ।
ରଚିବ କୁଳାୟ ତହିଁ
ହେ ମୋର ମାନସ-କପୋତ,
କପୋତୀର ଡେଣାର ଉଷୁମ
ଝରେ ଅବିରତ,
ତୂଳା ତୂଳା ବୁକୁ ତାର
ସୁଷମ ଓ ଶ୍ୱେତ ।

* * *

# ରାତି

ତାରାର ମୁରୁଜ ଅଙ୍କା
ମହମର ରାତି,
ଧଳା ଧଳା ବଉଦର ଭେଳା
ପଦ୍ମତୋଳା ବୋଲେ କେଉଁ କେଳା,
ଶଙ୍ଖଚୂଡ଼ ଚନ୍ଦ୍ର ଆସେ ଉଠି ।

ହାତିଦାନ୍ତ ସେତୁ ଟପି
ତାନ୍ତ୍ରିକ ପ୍ରହର
ଚଞ୍ଚଳ ମୁହୂର୍ତ୍ତ ସାଉଁଟି
ରଖିବାକୁ ତରତର
ଫେରି ଚାହେଁ ନେଉଟି ନେଉଟି ।

ମାଡ଼ିଆସେ କୁଟିଳ କୁହୁଡ଼ି
ଚନ୍ଦ୍ର ମରେ ବୁଡ଼ି
କୁହୁକିନୀ ନାରୀ ଦେହ
ଡାକେ ଆଖି ଠାରି,
ମାୟାଜାଲ ବୁଣି ବୁଣି
ମୋତେ ପୁଣି ପାରିବ କି ଧରି ?

ଦୂରରେ ଲାବଣ୍ୟ ହ୍ରଦ
ଉତ୍ତାଳ ଉନ୍ମାଦ,
ଭାଙ୍ଗିପଡେ ରଜତ ଲହଡି,
ନିଶାଚର ଆତ୍ମା ମୋର ଯାଏ ଉଡି ଉଡି ।
ଗୁଣ୍ଡ ହୋଇ ଝଡିପଡେ
ମହମର ରାତି,
ତିମିର ଫରୁଆ ଭାଙ୍ଗି
ସୂର୍ଯ୍ୟ ଆଣେ ନବୀନ ପାହାନ୍ତି ।

* * *

# ରବିବାର

ମଗୁଶୀର ଶୀତର ସକାଳ,
ପିଣ୍ଡାଯାକ ବୁଢ଼ୀମା'ର ବଡି,
ମନହୁଏ ଭାଙ୍ଗି ସୂର୍ଯ୍ୟ-ଘଡି
ଖୋଜପଡେ ପୁଣି ଘୋଡି-ଘାଡି ।

ଆଜି ରବିବାର,
ସୂତା ଛାଡେ ଆଶାର ଲଟେଇ
ଲାଲି ଘୁଡି ଉଡି ଉଡି
ଦେଶ ଦେଶାନ୍ତର
ମେଘବାଡ କଟେଇ କଟେଇ
ଭାସେ ଫର ଫର ।

ଦୂରେ ଦିଶେ ହଳଦି ପାହାଡ,
ପଟୁ ପଡି ସବୁ ଚୁଲଗାଡ,
ଆଜି ସମତଳ ।
ଜୀବନର ବୀଜ ବୁଣି
ଶୂନ୍ୟ ମୁଣି
ଫେରିବି ସହଳ ।

ଖୋଜିଯିବି କେତେ ଗୁମ୍ଫା
ଦୁଆରେ ତା ବିଞ୍ଚା କୁମ୍‌କୁମ୍,
ଧାନ-ରଙ୍ଗ ଖରା ପଡେ
ମୁହଁରେ ମୋ ଉଷୁମ ଉଷୁମ ।

* * *

# ଅନ୍ୱେଷଣ

ତୁମ ରାତି
ରାତି ନୁହେଁ ମୋର,
ତାରା ଫୁଟେ, ଅଗଣିତ ତାରା,
କାନ୍ଦିଉଠେ ପ୍ରସୂତି ପ୍ରହର,
ଜନ୍ମ ନେବ ଜହ୍ନ
ଭାଙ୍ଗିଦେଇ ଅନ୍ଧାରର କାରା ।

ଆଖି ମୋର ନିଦ ନିଦ
ଘରର ପ୍ରଦୀପ
ପବନରେ ଥରି ଥରି ଥରେ,
ଘୋଟିଆସେ କଳା କଳା
ଝଡର ବଉଦ,
ଜୀବନର ରଙ୍ଗ ସବୁ ସରେ ।

ଶୂନ୍ୟହାତେ ବସିଥିବି ଖାଲି,
ସ୍ତବ୍ଧ ରାତି, ତାରାର ତିମିର,
ଗୋଡତଳୁ ଖସେ ଚୋରାବାଲି
ହଜିଯାଏ ମାଟିର ଶରୀର ।

ଝଡ ନାହିଁ
ଚାହେଁ ମୁଁ କେବଳ
ଛାଇ ଛାଇ ଆଲୋକର ଭିତ,
ଆକାଶରେ ଜହ୍ନ ସୁନା-ଚକ୍ରି
ଆତ୍ମା ମୋର ଖୋଜିବୁଲେ ନୀଡ ।

* * *

# ରାତି-ଦିନ

ଆକାଶରେ ଅଗଣିତ ଚୀନା ଲଣ୍ଠନ
ତାରା ହୋଇ ମାଳ ପରି ଝୁଲେ,
ଉଠି ଆସେ ଚନ୍ଦ୍ରର ଫାନସ।

କୁହୁଡ଼ିରେ ଭୁଡ଼ୁଭୁଡ଼ୁ ପାରଦ ପାହାଡ଼,
ଯାଯାବରୀ ରାତ୍ରି ବୁଲେ।
ନିଃଶବ୍ଦରେ ଚିପି ଚିପି ଗୋଡ଼।

ଦିନ କାହିଁ, ପଳାତକ ଦିନ ?
ନରମ ମଧ୍ୟାହ୍ନ ?
ସୁନାଖରା, କେତେ କେତେ ଛାଇ
ହଳଦିଆ ସକାଳରେ
ସାନ ସାନ ଚଢ଼େଇର ଦେହ
ନାଚି ନାଚି ହୁଏ ଖାଲି ବାଇ।

ପରିଚିତ ଜନତାର ଭିଡ଼,
ସୁଷମା ନିବିଡ଼,
ଖୋଳି ଖୋଳି ଚିହ୍ନା ମୁହଁ-ଖଣି
ଦେହ ମୋର କୁଜା ହୋଇଯାଏ,
ବେଡା ବେଡା ହସ ଦେଇ ପୁଣି
ଗଢ଼ା ମୋର ନିଭୃତ ନିଳୟ।

ଝରକାରେ ଚାହିଁ ଦେଖେ
ଆସିଛି ଯେ ଜୀବନର ଚିଠି,
ଲାଲି ଓ ଶାଗୁଆ ଦିଶେ
ଲଫାପାର ଏପିଠି ସେପିଠି।

* * *

# ଅସମାପ୍ତ

ରାତି ଯେବେ ଫାଟି ପଡ଼େ
ଫାଳ ଫାଳ ଚିରୁଡ଼ା ଚିରୁଡ଼ା,
ଜହ୍ନ ଯେବେ କ୍ଷୟ ହୋଇ ଆସେ,
ରାସ୍ତାସବୁ ଛାକିଛୁକି ଛକ ହୋଇ
ପୁଣି ଫେରି ଆସେ,
ପତ୍ର ସବୁ ଝରି ପଡ଼େ
ହଳଦିଆ ଆଉ ବୁଢ଼ା ବୁଢ଼ା ।

ଶୀତ ରାତି ଭିଡ଼ିମୋଡ଼ି
ମାରି ମାରି ଅଜସ୍ର ଘୁଙ୍ଗୁଡ଼ି
କେତେବେଳେ ପୁଣି ଶୋଇପଡ଼େ
ରୁଣୁଝୁଣୁ ଶବ୍ଦ କରେ ତୁମ ଚୁଡ଼ି,
ତୁମ ହାତ ଚୁଡ଼ି,
ବାଲିର ପାହାଡ଼ ଡେଇଁ
ଆସ ଯେବେ ପାଣି କଡ଼େ କଡ଼େ ।

ଧୂଳିଝଡ଼ ଯେବେ ଥମିଯାଏ,
ତୁମର ପାଦର ଶବ୍ଦ
ବାଲି ଟପି ଧାଇଁ ଧାଇଁ ଆସେ,
ନିଛାଟିଆ ରାତି ଯେବେ
ନଇଁପଡ଼ି ଥରି ଥରି ହସେ ।

ତୁମକୁ ଦେଖିଛି ମୁଁ ତ
ନାଟକର ତୃତୀୟ ଅଙ୍କରେ
ଦୂରର ସବୁଜ-ଘର

ରଙ୍ଗ ତୂଳୀ ଭିତର ଭିତରେ ।
ବିଳମ୍ବିତ ଲୟର ମୂର୍ଚ୍ଛନା,
ତୁମ ଦେହ ପ୍ରଜାପତି
ନାଲି, ନେଳି, ଅଥବା ହଳଦି,
ମୁହଁ ଯାକ ବାଳ ଚୂନାଚୂନା ।

ମଞ୍ଚରୁ ଓହ୍ଲାଇ ଆସି
ତୁମେ ଯେବେ ହାତ ମୋର ଧର,
ମୁଠାରୁ ମୋ ଖସିପଡ଼େ
ନିଛାଟିଆ ଏହି ବାଲିଚର ।

ତୁମେ ତ ଆସିବ ପୁଣି
ଲାଜର ଅବିର ବୋଳି,
ସେ ମଥାରେ ମକୁଟ ଲଗାଇ
ଶୀତ ରାତି ପରି ଆସେ
ନିଦ ଭାଙ୍ଗି ଉଠି ମାରେ ହାଇ,
ଯବନିକା ଟଣା ହୋଇ ନାହିଁ ।

❖ ❖ ❖

# ସାଗରକନ୍ୟା

ତୁମ ଆଖି ସବୁଜ ସମୁଦ୍ର,
ତନୁତଟେ ଢେଉ ଭାଙ୍ଗିପଡ଼େ,
ପ୍ରବାଳର ଓଠ ଥରେ
ପୁଞ୍ଜ ପୁଞ୍ଜ ଫେଣର ଭିତରେ ।

ହେ ସମୁଦ୍ର-କନ୍ୟା !
ଜୁଆରର ବନ୍ୟା
ଆସେ,
ଆଖିପତା ଲୁଣି ମାରିଯାଏ,
ମନ ଯେବେ କାତି ଛାଡ଼େ
ସବୁ ପୁଣି ନୂଆ କରି ପାଏ ।

ଦିଗନ୍ତ ଯେଉଁଠି ସରେ
ନୀଳପାଣି ପହଁରି ପହଁରି,
ଚନ୍ଦ୍ର ଆଉ ସୂର୍ଯ୍ୟ ସ୍ନାନ କରେ,
କଳାମେଘ ଦେହ ଚିରି,
ବାଘନଖ ପଞ୍ଝା ମାରି,
ଆଶ୍ୱିନର ଝଡ଼ କୁଦା ମାରେ,
ପୁଣି କେତେ ଲାଞ୍ଜ ପିଟେ
ହଳଦିଆ ଏହି ଦି'ପହରେ ।

ତୁମେ ଯଦି ଚାଲିଯାଅ
ବାଲିଚରେ ଚିହ୍ନ ରଖି ରଖି
ମୋ ଝରକା ଖାଲି ଚାହିଁରହେ,
ତୁମ କାନି ଖସି ଖସି
ପବନରେ କେତେ କଥା କହେ ।

ତୁମେ କିନ୍ତୁ ବର୍ଷିୟସୀ
ଓଠ ତୁମ ରଙ୍ଗ ପାଲଟାଏ,
ପୋଡ଼ି ପୋଡ଼ି ଫାଟି ଫାଟି ଯାଏ ।
ଦେହ ତୁମ ଭାଙ୍ଗିପଡ଼େ
ଧୂଡୁ ଧୂଡୁ ଚମ ଆଉ ହାଡ଼,
ଲୋଚା କୋଚା ଜରାର ପାହାଡ଼,
ଆଖିପତା ଲୁଣି ମାରିଯାଏ
ମନ ଯେବେ କାଡି ଛାଡ଼େ,
କୁହ୍ କୁହ୍ ବ୍ୟର୍ଥତାରେ
ଚାପିହୁଏ ବିରାଟ ସମୟ ।

* * *

# ତୁମକୁ ମୁଁ

କେତେଦିନ କେତେ ରାତି ଧରି
ତୁମକୁ ମୁଁ ଖୋଜେ ଅନୁସରି ।
ଗ୍ରହ ଆଉ ତାରା ଛୁଇଁ ଛୁଇଁ,
ଆକାଶର ନୀଳ ଦେହ ଡେଇଁ,
ସମୁଦ୍ରର ସବୁଜ ସୀମାରେ
ନକ୍ଷତ୍ରର ଦୃଷ୍ଟି ନିଭିଗଲେ,
ତୁମକୁ ପାଇଛି ପୁଣି
ଏହି ମୋର ଦେହର ବେଢ଼ାରେ ।

କ୍ଲାନ୍ତି ମୋର ନାହିଁ,
ହେମନ୍ତର ଝଡ଼ ଯେବେ
ବାଟ ମୋର ହଠାତ୍ ଓଗାଳେ,
ଗୋଡ଼ ତଳେ ଚାପି ଚାପି
ଶିଶିରର ସାନ ସାନ ଦେହ
ରାତି ରାତି ଖାଲି ବାଟ ଚାଲେ ।

ବାଟ ମୋର ସରିବନି କେବେ
କେହି ଜଣେ ନାରୀ ମୋତେ
ଡାକିଯାଏ ସନ୍ଧ୍ୟା ହୁଏ ଯେବେ ।
ଯେ ପୃଥିବୀ ବଞ୍ଚ ରହେ
ମାଟି ଶାଢ଼ୀ
ଘାସ ଧଡ଼ି
ଦେହରେ ବେଢ଼ାଇ,
ସେ ପୃଥିବୀ ଛାଡ଼ିଗଲି,
ରଖିଗଲି ସେ ତୁମରି ପାଇଁ ।

ମୁଁ ଯଦି ବା ଥକିଯାଏ
ଝାଳ ମାରେ ମନର ଗୁହାରେ,
ଜୀବନର ଅଗାଧ ବିସ୍ମୟ
ମେଘନାଦ ପାଚିରୀ ଉହାଡ଼େ
ଖୋଲିଦେଇ ଚାଲିଯିବି,
ବୁଲି ବୁଲି
ବାଟ ଭୁଲି
ହଜିଯିବି କାଳେ !

ହେମନ୍ତର ଝଡ଼ ଯେବେ
ବାଟ ମୋର ହଠାତ୍ ଓଗାଳେ ।

* * *

# ପ୍ରଶ୍ନ

ପବନର ପାନିଆଁରେ ବାଳ ବାନ୍ଧେ
ପୃଥିବୀର ରାତି
ତାରା-ଫୁଲ ଖୋସି,
ତୁମର ବିବର୍ଣ୍ଣ ହାତ
ମୋ ହାତକୁ ଚାପିନିଏ ଆସି ।

ନିର୍ବାକ୍ ମୁହୂର୍ତ୍ତର ସିଡ଼ି
ଧାଡ଼ି ଧାଡ଼ି
ଚପି ତୁମ ଓଠ,
ଯଦି ପୁଣି କଥା କହେ
ତୁମେ ତେବେ ହାରିଯାଅ
ଏଥରକ ମୋର ଜିତାପଟ ।

ସବୁର ତ କ୍ଷୟ ଅଛି
ତୁମେ ମୋତେ ଭୁଲିଯିବ ଦିନେ;
ସରିଯିବ ହୃଦୟର ପ୍ରେମ
ଜୀବନକୁ ଭଲକରି ଚିହ୍ନେ ।
ଓଠର ଉଷ୍ମ କମେ
ବାସି ତାରା ଝରି ଝରି ପଡ଼େ,
ତଥାପି କାହିଁକି ସତେ
ମୋ ଦେହକୁ ଭଲପାଅ ତମେ ?

* * *

# ଚଢ଼େଇ

ତୁମେ ଯଦି ତୂଳାର ଚଢ଼େଇ,
ବୋଝେ ନଡ଼ା ପେଟରେ ପୂରେଇ,
ଲାଲି ଓଠ ରଙ୍ଗରେ ବୁଡ଼େଇ,
କଥା କୁହ ଗୁରେଇ-ତୁରେଇ ।

ଆଖି ତୁମ ଘନ ସାବ୍‌ଜା,
ବଣ ଆଉ ବିଲର ମଜା,
କେତେ ରଙ୍ଗ ଜୀବନ-ହଜା,
ତୁମେ ଖାଲି ହେବାକୁ ସଜା ?

ହୁଅ ଯଦି ବଣର ଚଢ଼େଇ
ଡେଣା ଝାଡ଼ି ଉଷୁମ ଝରେଇ,
ଉଡ଼ି ବୁଲ ଆକାଶ ଥରେଇ,
ତୁମେ ଯଦି ବଣର ଚଢ଼େଇ !

* * *

# ମୁହଁ

ଆଜି ହଠାତ୍ ତୁମକୁ
ଦେଖିଲି,
ଆକାଶର ଛଉ ଛଉକା ଅନ୍ଧାର
ଠେଲି
ତୁମ ମୁହଁ ମତେ ଅନେଇଛି,
କିନ୍ତୁ ସବୁ କିଛି
ସରିଗଲା ପରେ
ପୁଣି ଯଦି ନୂଆ କରି ଥରେ,
ତୁମେ ଆଜି ଫେରି ଆସ
ରୁନ୍ଧିଲା ରୁନ୍ଧିଲା ନିଃଶ୍ୱାସ
ମାରି,
ଅଗଣିତ ବାଧାର ପାଚିରୀ
ଟପିଟାପି କିମ୍ବା ଭାଙ୍ଗିଦେଇ !

ତାସ୍ ମୁଠା ଖୋଲିଗଲା ପରି,
ମୋ ଜୀବନ ମେଲି ହୋଇଯିବ,
ସାହେବ-ବିବିର ଢେଉ
କୁଅ୍ କୁଅ୍ ମେଘର କୁଆର
ରାତି ଟିକେ ଆଉ ବେଶି ହେଉ
ଦୁହେଁ ଯିବା ଜହ୍ନ-ବତିଘର ।

ତୁମ ଆଖି ତାରା ହୋଇ ଜଳେ
ଦେହ ତୁମ ମେଘରେ ମିଳାଏ,
ଚିକ୍କଣ ରାତିର ତଳେ ତଳେ
ଆଖି ତୁମ ନିଭି ନିଭି ଯାଏ ।

* * *

# ସ୍ୱଗତୋକ୍ତି

ଖାଲି ମୋତେ ଯଦି
ଜହ୍ନ ଦେଇଯାଅ,
ମେଘ ବାଳିକାର ଲୁଚୁକାଳି ଖେଳ,
ସରିଗଲା ପରେ
ସରଗ ଶିଶିର,
ଚୁପ୍ ଚୁପ୍ ସ୍ୱରେ ଶୁଣିବାକୁ ପାଅ ?

ତୁମ ହୃଦୟର ଢେଉ ଭାଙ୍ଗି ଭାଙ୍ଗି
ସ୍ତବ୍ଧ ନିଶାରେ ଫେରିଆସେ ଘର,
ଆଉ କେତେ ଦୂର, ଆଉ କେତେ ଦୂର ?
ସନ୍ଧ୍ୟା ନଦୀର
ବଙ୍କା ବଙ୍କା ଦେହେ
ଜହ୍ନ ଲେଖିଯାଏ ହଜାର କବିତା,
ଅଳସ ପୃଥିବୀ ତୁମେ ଆଜି ନାହଁ,
ଆକାଶର ଦେହେ ତାରକାର ଚିତା ।

ହୁଏତ ତୁମକୁ ପୁଣି କେତେବେଳେ,
ପାଇବି ଫେରାଇ ଜନତାର ମେଳେ,
ଯୋଜନ ଯୋଜନ ମଣିଷର ଭିଡ଼,
ଛାୟାପଥ ବାହି ରାତିର ସୀମାରେ
ଧୂସର ପ୍ରହର ଗଣି ଗଣି ଫେରେ ।

ଏ ଜୀବନ ଯଦି ସରିଯାଏ ତେବେ,
କ୍ଷୋଭ ରହିଯିବ ?
କ୍ଷୋଭ କାହାପାଇଁ ?

ତୁମେ ଆଜି ନାହଁ, ମୁଁ ବି ଆଜି ନାହିଁ ।

* * *




# ଭାବନା

ଭାବନା ମୋହର
ସୁଦୂର ଶଙ୍ଖଚିଲ,
ଅନେକ ପୃଥିବୀ ଅନେକ ଆକାଶ
ଟପି,
କେଉଁଠି ହଠାତ୍ ବାଟ ଭୁଲି
ପହଞ୍ଚିଲ,
ନୀଳ ନୀଳ ମେଘ
ଉହାଡ଼ରେ ଛପି ଛପି ।

ଯଦି କେତେବେଳେ
କ୍ଳାନ୍ତ ହୃଦୟ ଡାକେ,
ଦୂରର ପୃଥିବୀ ଦୂରର
ଆକାଶ ବ୍ୟାପୀ,
କୌଣସି ଏକ ପ୍ରଗଲ୍‌ଭ ଗୋଧୂଳିରେ
ବାସି ତାରକାର ବିବର୍ଣ୍ଣ
ମୁହଁ ଥାପି ।

ତୁମେ କ'ଣ ତେବେ
ଫେରିବନି ପୁଣି କେବେ ?
ଉଷର ମରୁର ପଳାତକ
ମରୀଚିକା,
ଅଗାଧ ଆକାଶ ସବୁ
ସରିଯାଏ ଯେବେ
ରଙ୍ଗ ପଡ଼ିଯାଏ ଫିକା ?

ହୁଏତ ବା ତୁମେ
ନିଜରୁ ହିଁ ଆସିଥିଲ,
ହେ ଭାବନା ମୋର, ସୁଦୂର ଶଙ୍ଖଚିଲ ।

* * *

# ଅଭିସାର

ଆସିବ କି ତମେ
ଝଡ଼ ଗଲେ ଥମି,
ଆକାଶରେ ନୀଳ
ମେଘର କିଆରୀ,
ଭିଜି ଭିଜି ଜହ୍ନ
ଦେହ ଛୁଇଁ ଛୁଇଁ ?

ମୋ ଘରର ଗଳି
ରହିଥିବ ଚେଇଁ,
ତମେ କି ଆସିବ
ହୃଦୟ ଥରାଇ ?
ସବୁ ଚୁପ୍ ଚାପ୍
ଖାଲି ଆଜି ପାଇଁ ।

ରାତି ବେଶି ହେବ,
ତାରା ଯିବ ଝରି,
ଛକର ଜ୍ୟାମିତି
ବାଟ ଯିବ ଭୁଲି,
ଆସିବ ସତେ କି
ହୃଦୟ ହରାଇ,
ପାଦ ଚିପି ଚିପି,
ଚୋରାଇ ଚୋରାଇ ।

ସବୁ ଶୂନ୍‌ଶାନ୍
ମୁଁ ଯେ ଏକୁଟିଆ,
ମେଘର କୁହୁଡ଼ି
ତାରା ନିଭିଗଲା,
ପ୍ରହର ସରିଲା
ଆସିବ ପ୍ରହର,
ତୁମ ଆକାଶରେ
କେବେ ହେବ ଭୋର ?

* * *

# ହେ ସହର, ହେ ମୋର ସହର

ହେ ସହର, ହେ ମୋର ସହର
ଏ ଗଳିରେ ସେ ଗଳିରେ ସନ୍ଧ୍ୟା ଆସେ
ଛାତ-ଛାତ ମିଶି ଏକାକାର।

ଏ ସହର କାନ୍ଥଯାକ
ଜହ୍ନ ମାରେ ହଜାର ପୋଷ୍ଟର,
ଜନତାର ଭିଡ଼ ଠେଲି ଚନ୍ଦ୍ରଭାନୁ
ପଶେ ବେଶ୍ୟାଘର।

ଅଫିମରେ ଯଯାତି ବିଭୋଳ
ଚର୍ମସାର ଗୋପିକାର ଦଳ,
ଅର୍ଦ୍ଧନଗ୍ନ ଦେହ ଆଉ
ହାତେ ହାତେ ଧରା ଭିକ୍ଷାଥାଳ।

ହେ ମୋର ଅଳୀକ ସହର,
ନୀଳ ଜହ୍ନ ମରିଯାଏ
ଆସେ ପୁଣି ପିତୁ-ବୋଳା ରାତି,
ସେ ରାତିର ମୁହଁ ନାହିଁ,
ଆଖି ନାହିଁ, ନାହିଁ ନାକ-କାନ,
ଅଶରୀରୀ, ଅବୟବହୀନ,
ସେ ରାତିର ପରିଚୟ ନାହିଁ,
ମେଞ୍ଚି ମେଞ୍ଚି ତାରକାର କ୍ଷତ
ଆକାଶରେ ନେସି ହୋଇଯାଏ।

ହେ ସହର, ମାଦଳ ସହର,
କ'ଣ ତୁମ ନାମ ?
ଏ ସହର ଛକ ପାଖେ ଲାବଣ୍ୟବତୀର
ଦେହ ହେଉଛି ନିଲାମ।
ମୋ ଘରର ଜଳାବାଟେ
ରାତି ପଶେ ଚୋର ପରି ନିତି,

ଅନ୍ଧାରର ଅପନ୍ତରା ତେଣେଁ
ପ୍ରିୟା ମୋର ଶୋଇଥିବ ଚେଣେଁ,
ଅଥବା ହଠାତ୍ ଉଠି
ଝରକାରେ ହୋଇଥିବ ଠିଆ,
ଆଖିରେ କଜଳ ନାହିଁ
ମୁହଁ ତାର ଶେତା, ପାଉଁଶିଆ ।

କ୍ରମେ ରାତି ପୁଣି ବେଶି ହେବ,
ମୋ ମନର ମଶାଣିରେ
ପୋଡ଼ା ହେବ ମୋ ପ୍ରିୟାର ଶବ ।

ହେ ସହର, ହେ ମୋର ସହର,
ସତେ ତୁମେ ସରିଯିବ
ପୋଡ଼ିଜଳି ହୋଇଯିବ କ୍ଷୟ ?
ସଭ୍ୟତାର ଏହି ପରାଜୟ,
ମୁଁ ଦେଖିବି ଅହଲ୍ୟା ପାଲଟି,
ବାହାରେ ବାଲିର ଝଡ଼
ସବୁ ଦିଗ ଯିବଟି ଚହଟି !
ପ୍ରେତରାତି ହେବ ନାହିଁ ଭୋର,
ହେ ସହର, ହେ ମୋର ସହର ?

ହେ ସହର ହେ ମୋର ସହର,
ତୁମେ କ'ଣ ସଜିଯିବ,
ଆଣିବନି ନୂତନ ଖବର ?
ତୁମେ ପରା ଜୀବନର ଘାଟି,
ଏ ପୃଥିବୀ ଏହି ଜଡ଼-ମାଟି,
ଫୁଲ ହେବ, ପାଲଟିବ ଘାସ,
ତୁମେ ଦେବ ନୂଆ ଜୀବନ୍ୟାସ !
ରାତି କ୍ରମେ ହେବ ଦିନେ ଦିନ,
ଏ ସହର ଆକାଶରେ
ହେବ ପୁଣି ଜୀବନ-ମଧ୍ୟାହ୍ନ ।

* * *

# ଐନ୍ଦ୍ରଜାଳିକ

ଘୋଡି-ଘାଡି ମେଘର ରେଜେଇ
ରାତି ଆସେ
ନକ୍ଷତ୍ରର ରାତି,
କାଚ-ଭଙ୍ଗା ଲଣ୍ଠନ ପରି
ତାରା ନିଭିଯାଏ ।
ହଠାତ୍ ଆକାଶ
ଚିରି ଝଡ ମାତେ
ଧୂଳିର ପାଚିରୀ ।

ମୁଁ ଯଦି ବା ହଜିଯାଏ
ଅନ୍ଧଗଳି ଏହି ପୃଥିବୀରେ
ତେବେ କ'ଣ
କ୍ଷତି ହେବ କାର ?
ହିସାବ ସେ ମନର ବିକାର ।

ଯଦି ପୁଣି ଜହ୍ନ ଭାସେ,
ମେଘର ହ୍ରଦରେ ଢେଉ ଢେଉ,
ହଠାତ୍ ତୁମର ମୁହଁ
ସେ ଜହ୍ନରେ ନେସି ହୋଇଯାଏ,
ନକ୍ଷତ୍ରର ପରମାୟୁ
ହେଉ ପଛେ ହେଉ-ବେଶି ହେଉ ।

ଆକାଶର ଇନ୍ଦ୍ରଜାଲ
କେହି କହେ,
ସେ ତ ତୁମେ ନୁହଁ,
ମୁଁ ଜାଣିଚି ଅବିକଳ
ତୁମ ମୁହଁ ସେ ତୁମରି ମୁହଁ ।

* * *

# ଦୀଘା

ବର୍ଷା ନାହିଁ ।
ଆଜିର ଏହି ଆଶ୍ଚର୍ଯ୍ୟ ନରମ ସକାଳରେ
ଝାଉଁ ଆଉ ଇଉକ୍ୟାଲିପଟାସ୍ ଗଛର ଫାଙ୍କ ଦେଇ
ଦେଖିଲି ହେଇ
ଦୂରରେ ସ—ମୁ—ଦ୍ର !
ଏଇ ସକାଳ ଓ ସମୁଦ୍ର,
ଢେଉ ଢେଉକା ବାଲି ଆଉ
ଝାଉଁ
ମୋତେ ଭାରି ଭଲ ଲାଗିଥିଲା;
ଠିକ୍ ଗୋଟାଏ ପରିଚିତ ସ୍ୱରର
ମୂର୍ଚ୍ଛନା ପରି ।

ମୟୂରକଣ୍ଠୀ ରଙ୍ଗର ସମୁଦ୍ର,
ପାହାଡ ପାହାଡ ଢେଉ, ଫେଣ,
ବିସ୍ତୀର୍ଣ୍ଣ ବାଲିର ଚଟାଣ
ଡେଇଁ,
ମୋତେ ଗ୍ରାସିବାକୁ ଆସୁଚି ।

ମୋର ଏହି ଦେହ ଓ ହୃଦୟ,
ସମୁଦ୍ର, ତୁମର ନିବିଡ ଫେଣର
ଗାମୁଛାରେ ପୋଛିନିଅ ।
ମୋ ଦେହକୁ ମାଜି ମାଜି ଚିକ୍କଣ କର,
ତା'ପରେ--ହଠାତ୍ ମୋତେ ବୁଡାଇଦିଅ
ତୁମ ଢେଉର ଅଜସ୍ର ହାବୁକାରେ ।

* * *

# ସାମୁଦ୍ରିକ

ଏ ପାଖରେ ବାଲିକ୍ଷେତ
ଢେଉ ଢେଉ ବିବର୍ଣ୍ଣ ଭଉଁରୀ;
ଗୋଳିଆ ଜହ୍ନର ଛାଇ
ନୀଳ-ହ୍ରଦ ଆକାଶ ଦେହରେ ।
ମୋର ଏ ନାବିକ ସତ୍ତା
ଭାସିଯାଏ ରାତିର ଗଭୀରେ ।
ଯେଉଁଠୁ ଆସୁଛି ଭାସି,
ନିସ୍ତେଜ ନାବିକର ଗୀତ
ଛିନ୍ନଭିନ୍ନ ସୁରର ଆଳାପ ।

ଯଦି ଏ ଆକାଶ ଗ୍ରାସି
ବ୍ୟାପିଯାଏ ମେଘର କୁହୁଡି,
ହଠାତ୍-ଝଡର ଶୀତ୍କାରରେ
ଆଦିମ ପୃଥିବୀର ଉଦରରୁ,
ଭାସିଆସେ ନାବିକର ଗୀତ,
ସ୍ତିମିତ ରାତିର ଆତ୍ମା ପରି
ଭାସିଯାଏ ଦିଗନ୍ତରୁ ଦିଗନ୍ତକୁ ।

* * *

# ଗୋଟିଏ ଦିନର ବସନ୍ତରେ

ଗୋଟିଏ ଦିନର ବସନ୍ତରେ
ସବୁ ଯଦି ଫୁଲ ହୋଇଯାଏ,
ଆକାଶର ତଟ ଡେଇଁ ମସୃଣ ମଣିଷର ଢେଉ,
ଛୋଟ ମୋର ପୃଥିବୀକୁ ଗ୍ରାସ କରେ,
ସ୍ମୃତିରେ ବୁଡାଏ ।

ମୋର ଦେହ
ଏ ମୋର ହୃଦୟ,
ପଳାତକ ଦିନ ଖୋଜିଯାଏ,
ହାତରେ ଚିକ୍କଣ ଚାହାଣିର ଜାଲ
ନରମ ମୁହୂର୍ତ୍ତର ସୂତାଦେଇ ବୁଣା,
କିନ୍ତୁ ଏଇ ଜଣାଶୁଣା
କ୍ଷୟ ଆଉ କ୍ଷତି,
ଅଦେୟ ଅନେକ କିଛି
ଜୀବନର ଗତି
ଭୁଲି,
ହିସାବ କରୁଚି କିଏ ?

ବୁଲି ବୁଲି
ଯଦି କେଭେ ସଭାର ଗହୀରେ,
ଭୋଦୁଅ ଖରାର ଛାଇ ଖୋଜି ଖୋଜି ଫେରେ,
ସବୁ ମୋର ଗାଇଯିବି
ମନଗଢା ଯେତେ,
ହେ ଆକାଶ, ହେ ପୃଥିବୀ,
କେତେ ଦେବ
ମୁଁ ବା ନେବି କେତେ ?

୦ ୦ ୦

# କାଠଯୋଡ଼ି

କାଶଫୁଲ, ଘାସ,
କୁମାରୀର ମୁହଁ ପରି
ମସୃଣ ଆକାଶ ।

ଧୋବଲା ବାଲିର ଚରା,
ପାଣି ନୀଳ-କଇଁ,
ମୁଠା ମୁଠା ବାଲି ବିଛି
ଶୋଇଛିରହେ କାଠଯୋଡ଼ି ନଈ ।

କାଠଯୋଡ଼ି ସ୍ୱପ୍ନ ଦେଖେ
ଦୂର କେଉଁ ସମୁଦ୍ରର କଥା,
ଆଜି ସବୁ ଚୁପଚାପ
ବାଲି, ବାଲି,
ଖାଲି ନୀରବତା ।

ଏ ବାଲିରେ ବୁଲିଯାଏ,
ମନ ମୋର ବାଲିରେ ଗାଧୋଏ—
ଛୋଟ ଛୋଟ ପାଣି ଧାର
କାଶଫୁଲ, ଘାସ,
ହୋଇଗଲେ ସାରିଦେଇ
ଉର୍ଦ୍ଧ୍ୱଶ୍ୱାସ
ଦିନର ସୂରୁଯ,
ସନ୍ଧ୍ୟା ଆସେ ସହରକୁ
ଟପି ହୋଇ ପଥରବୁରୁଜ ।

କାଠଯୋଡ଼ି ସ୍ୱପ୍ନ ଦେଖେ
କାଶଫୁଲ ଧୋବଲା ବାଲିରେ ।
ଅଗଣିତ ନକ୍ଷତ୍ରର ଛାଇ,
ବସନ୍ତରେ ସବୁଜ ଚନ୍ଦ୍ରେଇ,
ସନ୍ଧ୍ୟା ଆସେ ।

କାଠଯୋଡ଼ି କଥା କହେ,
ବାଲି ଆଉ ନକ୍ଷତ୍ରର କଥା,
ଛାୟାଚ୍ଛନ୍ନ ପୃଥିବୀର
ବ୍ୟସ୍ତ ଆଉ ବିବର୍ଣ୍ଣ ଉଦରୁ
ରେଳ ପୋଲ ପାରି ହୋଇ
ଚନ୍ଦ୍ର ଉଠେ କମଳା ରଙ୍ଗର ।

• • •

ଭାନୁଜୀ
ରାଓଙ୍କ
କବିତା

# ସ୍ୱୀକୃତି

ହୃଦୟ-ଭଙ୍ଗା ଅନେକ ଝଡ,
ତା'ପରେ ସବୁ ଶେଷ,
ହଜିଛି ମୋର ସ୍ମୃତିର ଖିଅ
ସବୁ ଯେ ନିରୁଦ୍ଦେଶ ।

ଅଧରା କେତେ ଆଖିର ଖରା
ଜୀବନେ ମୋର ପଡେ,
ଉଛୁଳି ଉଠେ ବ୍ୟଥାର ଢେଉ,
କେତେ ଯେ ଭାଙ୍ଗେ-ଗଢ଼େ !
ଅନେକ ରାତି, ଅନେକ ଖରା,
ସବୁଜ ଏହି ବସୁନ୍ଧରା,
ସପନ ଦେଇ ବାନ୍ଧିଲି ମୋର ଘର ।
ନାହିଁ ସେ ମାଟି
ନାହିଁ ସେ ଘର
ପଡିଛି ଖାଲି ବାଲିର ଚର,
ସରିଛି ଫୁଲ-ଝର ।

ମଉନ ଯେତେ ମୁଖର ହେବ,
ଆକାଶଭରା ସେ ଅନୁଭବ,
ଜାଣେ ମୁଁ ତାର ମାନେ,
ଝଡର ଶେଷେ
ରାତିର ଦେଶେ,
ଲକ୍ଷ ତାରାର ପ୍ରଦୀପ ଜାଳି,
ଜହ୍ନର ଲୁଚକାଳି,
ଜୀବନ ମୋର ଭରିଛି ତୁମ ଦାନେ ।

* * *

# ପୂର୍ଣ୍ଣିମା

ଆଜି ପୂର୍ଣ୍ଣିମା,
ଝାଉଁବଣ ଛୁଇଁ
ଗୋଟାଏ ବିରାଟ ରହସ୍ୟ ପରି,
ଆକାଶରେ ଜହ୍ନ,
ଧୂସର ସମୁଦ୍ରର ଏ ପାରିରେ ।

ଜହ୍ନ ଆଉ ଢେଉ
ଦୂରରେ ସ୍ୱପ୍ନ ପରି ବନଭୂମି,
ଆଜି ପୂର୍ଣ୍ଣିମା ।

ହଳଦି ରଙ୍ଗର ଜହ୍ନ,
ମୋର ଏ ନିଃସଙ୍ଗ ଜୀବନକୁ
କୁମାରୀର କମନୀୟ ସାନ୍ନିଧ ପରି
ପୂର୍ଣ୍ଣ କରିଛି ।

ଉଦ୍ଦାମ ବସନ୍ତରେ,
ଅଜସ୍ର ଆଲୋକର ଜୁଆର,
ନକ୍ଷତ୍ରର ପଟୁଆର
ନେଇ,
ହଁ—ଆଜି ପୂନେଇଁ ।

* * *

# ପୂର୍ଣ୍ଣମୀ ତିଥିର ଜହ୍ନ

ଆକାଶରେ ଜହ୍ନ ପୁଣି
ଜହ୍ନ ଭାସେ ସମୁଦ୍ର ଦେହରେ,
ଝାଉଁବଣ କାନ୍ଦେ ବୋଲି
କାନ୍ଦେ ଆଜି ଆକାଶ ନୀଳିମା ।

ସମୁଦ୍ରବେଳାରେ ଯେବେ,
ଜହ୍ନ ଆଉ ଜୁହ୍ନାତିରେ ବୁଡି,
ଶାମୁକା ସାଉଁଟି ନିଏ,
ବାଉଳା ସମୁଦ୍ରର ଢେଉ ।

ମୁଁ ତୁମକୁ ଖୋଜେ ଖାଲି,
ସଂଶୟର ପ୍ରତିଶ୍ରୁତି ଭୁଲି,
ନିଶବ୍ଦ ବେଳାଭୂଇଁ
ସ୍ତବ୍ଧ ଆଜି ତୁମ ପ୍ରତୀକ୍ଷାରେ ।

ମରୁଭୂମି ଦେଖିଛି ମୁଁ,
ମରୀଚିକା ଚିକ୍କଣ ରାତିର,
ପୃଥିବୀର ଗୋପ୍ୟ କଥା,
ଜନ୍ମ ଆଉ ମରଣର ଭାଷା,
ଶୁଣିଛି ମୁଁ କାନ ଡେରି,
ସ୍ୱପ୍ନ ନୁହେଁ—ଜୀବନ-ଜିଜ୍ଞାସା ।
ମୋର ଏହି ଅସ୍ଥିମଜ୍ଜା
ରକ୍ତ, ମେଦ ଶିରାପ୍ରଶିରାରେ,
ତୁମକୁ ଖୋଜିଛି ଖାଲି

ସଂଶୟର ପ୍ରତିଶ୍ରୁତି ଭୁଲି ।
ବାର୍ଦ୍ଧକ୍ୟର ପରିଧିରେ
ସହରର କୋଳାହଳ ବ୍ୟାପି
ଆତ୍ମା ମୋର ବାଟ ଭୁଲେ
ସ୍ୱପ୍ନ ଆଉ ସୂର୍ଯ୍ୟର କୁହେଳି ।

କେବେ ରାତି ଝଡିପଡେ
ଚନ୍ଦ୍ର-ତାରା ଆଲୋକର ଢେଉ,
ସବୁ କ'ଣ ଅର୍ଥହୀନ,
ବର୍ଣ୍ଣହୀନ—ବିବର୍ଣ୍ଣ—ବିହ୍ୱଳ,
ଭ୍ରାନ୍ତ ଏହି ନିଶୀଥରେ ପୂର୍ଣ୍ଣମୀ ତିଥିର ଚନ୍ଦ୍ର
ନିରର୍ଥକ ନିଃସଙ୍ଗ କେବଳ ?

✿ ✿ ✿

# ଝଡ଼ର ଶେଷ

ଆକାଶେ ଝଡ଼,
ମନେ କି ପଡ଼େ ?
ଅନେକ ରାତିର ବ୍ୟଥା ନେଇ ଆଜି
ଆକାଶ ଝରେ ।

ମନେ କି ପଡ଼େ ଶକୁନ୍ତଳା,
ପଡ଼େ କି ମନେ,
ଆଜି ନିଶୀଥରେ ଶ୍ରାବଣ ଝରେ ।

ସବୁରି ଶେଷ
ସଜଳ ଆଖି,
ବାହାରେ ଝଡ଼
ଜୀବନ ଚାଖି,
ପାରିନି' ସତେ ଶକୁନ୍ତଳା,
ଆକାଶେ ଝଡ଼,
ଆକାଶ କଳା ।

ଗରଜଇ ମେଘ
ବଜ୍ର ଥରେ,
ଅନେକ ଝଡ଼େ
ହୃଦୟ ଭାଙ୍ଗେ
ହୃଦୟ ଗଢ଼େ,
ମନେ କି ପଡ଼େ
ଶକୁନ୍ତଳା,
ସେଦିନ ରାତି,
ରାତିର ଜ୍ୱାଳା ?

ଥମିଛି ଝଡ଼,
ଜୀବନ ଜଡ଼,
ଜୀବନ ସରେ,
ସେଦିନ ଝଡ଼େ
ମନେ କି ପଡ଼େ
ଶକୁନ୍ତଳା,
ସେଦିନ ରାତି,
ମନର ତାତି,
ମନେ କି ପଡ଼େ ?

* * *

# ମଲା ନଦୀ : ସବୁଜ ପୃଥିବୀ

ଏ ନଦୀରେ ସ୍ରୋତ ନାହିଁ,
ଢେଉ ନାହିଁ ଏ ମଲା ନଈରେ,
ବସନ୍ତ ଆସେନା କେବେ
ବାଟ ଭୁଲି,
ସମୟର ନୀତି ।

ବାଲି ଆଉ ଶିଉଳିରେ ମୁଣ୍ଡ ପୋତି
ଏ ନଈ ଢୁଳାଏ,
ଧୂସର ସନ୍ଧ୍ୟାରେ ଯେବେ
ମୁଁ ସେଠାକୁ ବୁଲିବାକୁ ଯାଏ ।

ସେତେବେଳେ ଆକାଶରେ
ପ୍ରଶ୍ନମୟ ସପ୍ତର୍ଷିର ଆଖି,
ମୁଁ ଦେଖିଛି ଲଘୁ-ଗୁରୁ ଚେତନାର
ନିଃସଙ୍ଗ ସ୍ତବ୍ଧତା,
ହେ ଅମୃତପୁତ୍ର ଶୁଣ,
ଏ ନୁହେଁ, ଏ ନୁହେଁ ମୋକ୍ଷ,
ନୁହେଁ ଏ ତ ଜୀବନର କଥା ।

ଏ ସବୁ ଡିଆଁଇ ମୋତେ
ନେଇ ଚାଲ ଅନ୍ୟ କେଉଁ ଦେଶ,
ସମୁଦ୍ରର ଗଭୀରତା ଥରି ଥରି
ନୀଳ ହୋଇଯାଏ,

ନିଃଶେଷ
ଏ ମରୁଭୂଇଁ,
ଛାଡ଼ି ଚନ୍ଦ୍ର ତୁହିନ-ଶୁଭ୍ରତା,
ଭଲ ମୋତେ ଲାଗେ ନାହିଁ
ରାତିର ଏ ରୂକ୍ଷ ପବିତ୍ରତା ।

ଆକାଶ-କନ୍ୟା ଆସେ
ନକ୍ଷତ୍ରର ପଟୁଆର ନେଇ,
ଏ ପୃଥିବୀ ଜୀବନ୍ୟାସ
ମୋ ହାତରେ,
ମୁଁ ଦେବି ପିନ୍ଧାଇ,
ସବୁଜ ଅରଣ୍ୟ ଦେହେ
ଅସରନ୍ତି ରଙ୍ଗୀନ୍ ଚନ୍ଦ୍ରେର ।

* * *

# ସତ୍ତା ଓ ସମୁଦ୍ର

ଅନେକ ମୁହୂର୍ତ୍ତ ଗୁନ୍ଥି, ସ୍ମୃତିର ସୁରଭି
ନେଇ ଯେବେ,
ପୃଥିବୀର ସବୁ ବାଟ ଚାଲି ଚାଲି
ପହଞ୍ଚିଛି ଏବେ,
କେଉଁ ଏ ଅଜଣା ଦେଶେ,
ବିଚିତ୍ର ଆକାଶେ,
ଚପଳ ନକ୍ଷତ୍ର ଯହିଁ ଲୋଟି ଲୋଟି ହସେ ।

ତୁମେ ଯଦି ଆସ ଆଜି
ଘୋଡ଼ିଘାଡ଼ି ରାତିର କୁହୁଡ଼ି,
ଖାଲି ଆଜି ରାତି ପାଇଁ
ଦୁହେଁ ଯିବା କୁହୁଡ଼ିରେ ବୁଡ଼ି,
ଆଜି ପାଇଁ ଯିବା ବାଟ ବୁଡ଼ି ।

ତିଲର ଚିତ୍କାର ନାହିଁ, ସମୁଦ୍ରର
ମାଛରଙ୍କା ଦେହ,
ଦୁହେଁ ଯିବା ଲୀନ ହୋଇ,
ଏ ରାତିକୁ କରନା ସନ୍ଦେହ !

ଛିନଭିନ ଚେତନାରେ ଫେରିଆସୁ
ସମୁଦ୍ରର ଢେଉ,
ସମୁଦ୍ର-ସାରସ ଆଜି ଉଡ଼ିଯିବ
ବେଳ ଥାଉଁ ଥାଉଁ
କେବଳ ଗୋଟିଏ ନୀଡ଼
ସନ୍ତାନର ପ୍ରତିଶ୍ରୁତି ଘିନି,
ମୋ ସତ୍ତାକୁ ଛୁଇଁବାକୁ
ଆଶ୍ଚର୍ଯ୍ୟ ଜୁଆର ଆସେ,
ଅନ୍ଧାରରେ ବାଟ ଚିହ୍ନି ଚିହ୍ନି ।

* * *

# ଆକାଶ ଯାଇନି ସରି

ଆକାଶ ଯାଇନି ସରି,
ଭାସିବୁଲେ ଧଳା ମେଘପଲ,
ତା'ପରେ ଗଭୀର କେଉଁ ଇଙ୍ଗିତରେ
ପାଲଟେ ସୁନେଲୀ,
ବାଦାମୀ ବା ନେଳୀ,
ଉଦ୍ଦାମ– ଚଞ୍ଚଳ ।

ଏଇଠି ଜୀବନ ଅଛି,
ଜହ୍ନ, ତାରା, ନକ୍ଷତ୍ରର ନୀଡ଼,
ରାତି ହେଲେ ଚେତନାରେ
ଭାବନାର ଭିଡ଼ ।

ସେତେବେଳେ ଥୁଣ୍ଟା ଗଛ
ପଛପଟେ ଜହ୍ନ,
ପେଚାର ଡେଣାର ଶବ୍ଦ
ଆଦିମ ଓ ବଣ୍ୟ
ନିସ୍ତବ୍ଧତା ଛିନ୍ନ କରେ,
ଆକାଶରେ ତାରାର ଅରଣ୍ୟ ।

ନିସ୍ତବ୍ଧ ଚଢ଼େଇ ସବୁ
ଝାଉଁବଣ କାନ୍ଦେ ରହି ରହି,
ମୁଁ ଏକାକୀ, ମୁଁ ଆଜି ବିରହୀ ।

ଆକାଶ ଯାଇନି ସରି,
ନୀଳ-ନୀଳ ଅଗାଧ ସମୁଦ୍ର,
ତା' ଦେହରେ ମୁହଁ ଥୋଇ

ମୁଁ ଭାବେ ଅନେକ କିଛି,
ବୃହତ୍ ଓ କ୍ଷୁଦ୍ର ।
ଜୀବନର ମରୀଚିକା,
ପୁରାତନ ପୃଥିବୀର କଥା,
ମୃତ ବା ଜୀବିତ ଯେତେ,
ମୁଁ ଡାକୁଛି ଭୁଲିବାକୁ ବ୍ୟଥା ।

ରୂପସୀ ରାତିର ଦେହେ,
ଏ ରାତିର ଜହ୍ନ ଆଲୁଅରେ,
ଆସ ଆଜି,
ଆସ ଖାଲି ଥରେ ।

* * *

# ବାଟଚଲା ଶେଷ ହେଲା

ମେଘର ଜୁଆର ଆସେ
ଭ୍ରାନ୍ତ ଯହିଁ ପୃଥିବୀର ସୀମା,
ବାଟଚଲା ଶେଷ ହେଲା,
ଅନ୍ଧକାର ଆକାଶ-ମହିମା ।

ଏ ରାତିର ଶୀତ ପରି
ବୋଳି ହୋଇ କୁହୁଡ଼ି କାକର,
ଉଦ୍‌ଭ୍ରାନ୍ତ ନକ୍ଷତ୍ର ଏକ
ଚନ୍ଦ୍ରହୀନ ବିବର୍ଣ୍ଣ ସନ୍ଧ୍ୟାରେ
ଏକୁଟିଆ, ନୀରବ, ନିଶ୍ଚଳ ।

ବାଟଚଲା ଶେଷ ହେଲା,
ମୁଁ ଆଜି ଆସିବି ଫେରି
ସହର ଭିଡ଼ରୁ ଦୂର—ଦୂରତର
କେଉଁ ଏକ ଗ୍ରାମେ,
ବଗ ଆଉ ବଗୁଲୀର ଭିଡ଼,
ବଙ୍କା ବଙ୍କା ଧାନକ୍ଷେତ ହିଡ଼,
ସେଇଠି ପଡ଼ିବି ଶୋଇ
ବସା ଯହିଁ କୋକିଶିଆଳୀର ।

ଦିଗନ୍ତର ଦ୍ୱିଧା ଭାଙ୍ଗେ
ଅକସ୍ମାତ୍ ସୂର୍ଯ୍ୟର ଇଙ୍ଗିତ,
ବାଟଚଲା ଶେଷ ହେଲା,
ଉଡ଼ିଗଲା ଗେଣ୍ଡାଳିଆ,
ଝାଡ଼ିଦେଲା ପର,
ସାଧବ ବୋହୂର ନାଲି
ଚୋରି କରେ ଆଶ୍ଚର୍ଯ୍ୟ ପ୍ରହର ।

* * *

# ବସନ୍ତ ରାତିରେ

ପଳାତକ ମନ ପଛେ
ସାରା ରାତି ଜହ୍ନ ଆଲୁଅରେ
ହୋଇଛି ଫେରାରୀ
ଏଇଠି ବିଛଣା ପାରି,
ଘୋଡ଼ି ହୋଇ ନିଦର ରେଜେଇ
ପଡ଼ିବି ମୁଁ ଶୋଇ।

ଆଖିରେ ମୋ ନିଦ ନାହିଁ,
ଜହ୍ନର ଅଦ୍ଭୁତ ଘ୍ରାଣ,
ଚାରିପାଖେ ବଣ
ଦେବଦାରୁ, ଶାଳ-ପିଆଶାଳ,
ଲଟା, ବୁଦା, ଘାସ,
ଜହ୍ନର ଆଲୁଅ ଝରେ
ବସନ୍ତର ମାସ।

ଏ କିଛି କାହାଣୀ ନୁହେଁ,
ମୋ ଜୀବନ ଯାଯାବର ପରି,
ଏଇଠି ବିଛଣା ପାରି
ଦେବଦାରୁ ପତର ଉପରେ,
ଶୋଇବି ମୁଁ ନିଶ୍ଚିନ୍ତ ନିଦରେ।

ପବନର ଦୀର୍ଘଶ୍ୱାସ,
ଜହ୍ନର ଆଲୁଅ ଝରେ
ବସନ୍ତର ମାସ।

ଶୋଇ ଶୋଇ ଭାବୁଛି ମୁଁ
ନିଦ୍ରାହୀନ ଶେଷ ପ୍ରହରରେ,
ତୁମେ କ'ଣ ଆସିବନି
ହଠାତ୍ ହରିଣୀ ପରି
ଜହ୍ନରାତି, ବସନ୍ତ ମାସରେ ?

* * *

# ଝଡ଼

ସେ ଦିନ ଥମିଛି ସବୁ
ଚାରିଆଡ଼ ଚୁପ୍‌ଚାପ୍, ଅଚେତନ, ନିଶ୍ଚଳ, ନୀରବ,
ଥକା ଗଛ ପତର ଭିତରେ
ଶୋଇଛି ଚକ୍ରୋଶ,
ପୃଥିବୀଟା ଠିକ୍ ଗୋଟେ ଶବ ।

ହଠାତ୍ ଆସିଲା ଝଡ଼
ଛିନ୍ନଭିନ୍ନ ଅନ୍ଧାରର ଢେଉ,
ମୋ ଚେତନା ଚହଲାଇ
ସେ'ଦିନ ଆସିଲା ମେଘ
କଳା କଳା ମଇଁଷିର ପଲ ।
ପୁଞ୍ଜିତ ଉଦ୍‌ବେଗ ଢାଳି,
ଶିହରାଇ ପ୍ରତି ଲୋମକୂପ,
ସେଦିନ ଆସିଲା ବର୍ଷା,
କଦମ୍ବକନ୍ଦର ସ୍ୱପ୍ନ,
ଲୁଚିଯାଏ ପୃଥିବୀର ରୂପ ।

ମୁଁ ଏକ ନାବିକ ପରି
ଏ ଝଡ଼ରେ ବାଟ ଯାଏ ଭୂଲି,
ତା'ପରେ ବୁଲିଛି କେତେ
ଲୁଙ୍ଗ ଲୁଙ୍ଗ ପୃଥିବୀର ସାନୁ,
ବର୍ଷ ବର୍ଷ ଝଡ଼ରେ ଝଡ଼ରେ,
ଚଲା ମୋର ସରି ନାହିଁ
ଏ ଝଡ଼ରେ ଭାଙ୍ଗିଛି ମୋ ଜାନୁ ।




ତଥାପି ଥମିନି ଝଡ଼,
ପୃଥିବୀ-ଅହଲ୍ୟା ଜଡ଼
ପାଲଟିଛି ସେ ଦିନ ରାତରେ ।

ଝଡ଼ ଏକ ଉଦ୍‌ଭ୍ରାନ୍ତ ମାତାଲ,
ଧୂଳି ଆଉ କୁଟାକାଠି,
ବାସି ଚିରା ଖବରକାଗଜ,
ଧରି ମାତେ ବିଚିତ୍ର ଖିଆଲ ।
ଏ ପୃଥିବୀ କରିବାକୁ ଚୂନା,
ଝଡ଼ ନାଚେ, ଝଡ଼ ବ୍ୟାଲେରିନା ।

* * *

# ମାୟାବୀ ସକାଳ

ସକାଳର ଖରା ନେଇ ଖେଳିବାକୁ
ମନ ହୁଏ ଭାରି,
ମୁଠା ମୁଠା ଧାନରଙ୍ଗ
ଖରା ବିଛୁ କିଆରୀ କିଆରୀ ।

ଚାଲ ଯିବା ଉଡ଼ି ଉଡ଼ି
ଆମେ ଦୁହେଁ ଦୁଇଟି ଚଢ଼େଇ,
ଚୁପ୍ ଚାପ୍ ଶୋଇଯିବା
ପାରି ଦେଇ ଖରାର ଚଟେଇ !

ଯୋଜନ ଯୋଜନ ଖରା
ଦୁହେଁ ଯାଇ ପଡ଼ିବା ଗାଲେଇ,
ଧାନକଟା ସରିବଣି,
ଦୁହେଁ ଦେବା ଦୁହିଁଙ୍କି ହଜେଇ ।

ଅନେକ ପ୍ରହର ପରେ
ଆଖି ମଳି, ମୁଁ ପୁଣି ଚାହିଁବି,
ଆକାଶରୁ ସୁନା ଝରେ,
ଧାନକ୍ଷେତ, କୁଟା ଆଉ କାଠି,
ମୋ ହାତରେ ତୁମ ହାତ,
ଏ ସକାଳ ଏଡ଼ିକି ମାୟାବୀ !

ଚିଲର ଚିତ୍କାର ଥରେ,
ତୁମେ ଉଠ ହଠାତ୍ ଚମକି,
ଘାସଫୁଲ ପାଖେ ପାଖେ
ଡେଣା ମେଲି ଉଡ଼ିଯାଏ ଜଙ୍କି
ଆଖିପେଷା ଗଲାଣି ଆଗେଇ ।

* * *

# ସମୁଦ୍ର ମୋ ମୁହାଁମୁହିଁ

ସମୁଦ୍ର,
ଗୋଟାଏ ବିରାଟ ବିସ୍ମୟ ପରି ମୋତେ ଆକର୍ଷଣ କରେ।
ନୀଳ ନୀଳ ପାଣିର ପଟାଳି
ଶାମୁକା ଓ ବାଲି ।

ଏଇଠି,
ଅନ୍ଧାର ଆସେ ବିଲେଇ ପରି ନିଃଶବ୍ଦ ଚରଣରେ,
ମୁକ୍ତା ଆଉ ପ୍ରବାଳ ଚୋରାଇବାକୁ।

ତା'ପରେ,
ଢେଉର ଫୁସ୍‌ଫାସ୍ କଥା ଭିତରେ,
ଦୂରର,
ଝାଉଁବଣ କଣରେ,
ପେଚା ପରି ଗୋଲ ମୁହଁ ନେଇ ଜହ୍ନ।

ସେଦିନ,
ରାତିର ବିବର୍ଣ୍ଣ ହୃଦୟରେ କୁଆର,
ଝାଉଁବଣରେ ମର୍ମର
ଶୁଣିଛି।

ତା'ପରେ,
ବହୁତ ପରେ
ମୁଁ ବସି ଭାବିଛି,
ଅନେକ କିଛି,
ବିସ୍ମିତ କଙ୍କଡ଼ାର ଆଖିକି ଉପେକ୍ଷା କରି ।

ସେତେବେଳେ,
ଆକାଶରେ ଶଙ୍ଖରଙ୍ଗର ମେଘ,
ସମୁଦ୍ର, ମୁଁ, ଆଉ ଝାଉଁ,
ସବୁ ଏକାକାର ଜହ୍ନର ପ୍ଲାବନରେ।

* * *

# ମାଛ

ଓଦା ଗୋଲାପର ପାଖୁଡ଼ା ପରି
ସକାଳ ।
ଛଅଟି ଲଙ୍ଗଳା ଦେହ
ଛପି ଛପି ଆଗେଇ ଆସୁଛନ୍ତି,
ନୃତ୍ୟର ଅଭ୍ୟସ୍ତ ଭଙ୍ଗୀରେ,
କୋମଳ ପାଣିର ଦେହରେ
ତରଙ୍ଗ ତୋଳି ।

ସେମାନେ ଲାଗିଆସୁଛନ୍ତି ପରସ୍ପର ପାଖକୁ
ମାଛରଙ୍କା ଆଉ ଚିଲର ଚିତ୍କାର ଦେଇଁ ।
ଗୁଲି ଗେଣ୍ଡା ଓ ପ୍ରବୀଣ ବେଙ୍ଗର ନିଶ୍ଚିନ୍ତତା ବଢ଼ାଇ,
ଆଗେଇ ଆସୁଛି ଛଅଟି ଦେହ,
କଳା ଓ ଫୁଙ୍ଗୁଳା ।

ବାରଟି ଲୋଭୀ ଆଖିର ପହରାରେ
ଢାଳ ଉଠୁଛି ଏଥର,
ଆଉ ଉଠୁଛି,
ଅସ୍ଥିର-ଦେହୀ ରୋହି ଓ କେରାଣ୍ଡି,
ସୂର୍ଯ୍ୟ ପରି ଉଜ୍ଜ୍ୱଳ ।

✲ ✲ ✲

# ବୁଢ଼ାଟି

ବୁଢ଼ାଟି ବସିଛି,
ଚଢ଼େଇ ପରି ଆଣ୍ଠୁ ଭାଙ୍ଗି କୁଜା ହୋଇ,
ପେଚୁଆ ଆଖିରେ ଲେଞ୍ଜରା,
ମନରେ ପୁରୁଣା କଥାର ପାକୁଳି,
କାଠପାଳିଆ ପରି ହାତ ଦୁଇଟା କ୍ଲାନ୍ତ ।
ସେ ଯେମିତି,
ବୁଢ଼ୀମା ଗପର ବୁଢ଼ା ଅସୁରଟିଏ,
ନିଃସଙ୍ଗ ବୁଢ଼ାଟି– ବିଚାରା !

ପିଣ୍ଡାରେ ବସିଛି ବୁଢ଼ାଟି,
ରାତି ଗୋଟାଏ ଅତିକାୟ ଚଢ଼େଇ ପରି
ଝାମ୍ପୁଛି ପୃଥିବୀକୁ ।
ବାଦୁଡ଼ି ଯାଉଛି ଉଡ଼ି,
ଏକ-ଦୁଇ ଟ୍ରେନ ଡବା ପରି ।
ଆକାଶରେ ଜହ୍ନ ଯେମିତି ଗୋଟାଏ ଲାଉ,
ଆଉ
ପବନରେ ଉଡୁଛି ବୁଢ଼ାର ନିଶ
କୋତାର ବଳକା ଫିତା ପରି ଅବାନ୍ତର ।

* * *

# କୋଣାର୍କ

ଆମେ ସବୁ ସହରର ଲୋକ,
ବାହାରିଛୁ ଦେଖିବୁ କୋଣାର୍କ।
ହଠାତ୍ ମଟର ଧରି ଲାଲି ଧୂଳି
ଉଡ଼ାଇ ଉଡ଼ାଇ,
ମୁହଁରେ ଚୁରଟ୍, କାନ୍ଧରେ ଝୁଲାଇ 'ରୋଲୀ',
ଆମେ ସବୁ ପାଖାପାଖି,
ଚକାଚକି ପଞ୍ଜାବୀ ଓ ଚୋଲୀ।

ଆମେ ସବୁ ଭଦ୍ରଲୋକ,
ଚିକ୍ ଚିକ୍ ସୁନାର ବୋତାମ,
ତାସ ଆଉ ଗ୍ରାମୋଫନ୍,
ବୋତଲରେ 'ରାମ୍'।

ସହର ସୀମାରୁ ଦୂର ନିଛାଟିଆ
ଏକୁଟିଆ ଗ୍ରାମ,
ଜାଣେ ନାହିଁ କ'ଣ ତାର ନାମ।
ସେଇଠି ରହିଲୁ ଆମେ;
ପଇଡ଼ର ତୃଷା ଲାଗେ ଭାରି,
କିଏ ଏ କିଶୋରୀ ?
ଶାନ୍ତ ତାର ଦୁଇ ଆଖି
ଗାଈ ଆଖି ପରି !

ଚୁପ୍ ଚାପ୍ ବସିଛି ମୁଁ,
ମଗ୍ନ ମୋର ଚେତା,

ସଙ୍ଗିନୀ ଦେଖାଇଦେଲେ
ବାଉଁଶବୁଦା ଅଗରେ କାପତା ।
କେଉଁଠି ବା ଧାନର ଅରଣ୍ୟ,
ଝାଉଁ ଆଉ ବାଦାମର ବଣ,
କାହ୍ନାର ପିଣ୍ଡାରେ ଲାଉ,
ଏ ସବୁ ଦେଖିଲୁ ଆମେ
ଦିନ ଥାଉ ଥାଉ ।

ତା'ପରେ ଆସିଲା ରାତି,
ପୋଲାଙ୍ଗ ଗଛର ପତ୍ର ଚିକ୍‌ମିକ୍,
ଜହ୍ନ ଆସେ ଉଇଁ,
ବିସ୍ତୀର୍ଣ୍ଣ ଘାସର ଚଟେଇ,
ଯାଦୁକର ମେଘ ଆଣେ
କେତେ ସାନ କେତେ ବଡ଼ ଛାଇ ।

ଏସବୁ ଦେଖିଲୁ ଆମେ
ଧୂଳି ଆଉ ଚୁରଟ୍ ଧୂଆଁରେ,
'ତୁମେ କ'ଣ କୋଣାର୍କ ଦେଖିଛ ?'
ଲାଲି-ଓଠ ଝିଅଟି ପଚାରେ ।
ଅଳସକନ୍ୟାର ଛାତି ସତେ କ'ଣ
ପଥରରେ ଗଢ଼ା ?
ଦାନ୍ତ ଚାପି ହସିଲା ସେ,
ତା ହସର ଦାମ୍ ଭାରି ଚଢ଼ା ।

ତା'ପରେ ଅନେକ ଝାଉଁ,
ଡେଙ୍ଗଁ ଡେଙ୍ଗଁ ବାଲିର ଚକଡ଼ା,

ଟପିଟାପି ଗୋପ, ନିମାପଡ଼ା,
ଭାବୁଛି କେଡ଼ିକି ବଡ଼ କୋଣାର୍କର
ହାତୀ ଆଉ ଘୋଡ଼ା !

ଏଇଠି ରହିଲା ଗାଡ଼ି,
ବାଲି ଭାଙ୍ଗି, ଠେଲି ଠେଲି ପାଦ,
ପହଞ୍ଚିଲୁ ଆମେ ସବୁ,
ଦୂରୁ ଶୁଭେ ସମୁଦ୍ରର ନାଦ ।

କୁକୁଡ଼ାର ହାଡ଼ ନେଇ କୁକୁରଟା
ଚୋବାଉଛି ଖାଲି,
ଅଣ୍ଡାର ଖୋଳପା ଆଉ ମାଛକଣ୍ଟା
ଚାରିପଟେ ବାଲି ।
ଏଠି ଅଛି ଡାକବଙ୍ଗଳା,
ଟଣା ପଙ୍ଖା, ଆରାମଚଉକି,
ନିଶ୍ଚିନ୍ତ ନିଦର ମଜା,
ଏ କିଛି ନୁହେଁ ତ ସଉକି !

ଶୋଇ ଶୋଇ ଭାବୁଛି ମୁଁ,
ଭୁଲିଯିବି ଆଗ ଆଉ ପଛ,
ପଚାରିଲା ଅଛ ହସି, ଆଖି ଟେକି,
ଭୁଲତା ନଚାଇ,
ସେ ଝିଅଟି ମୋତେ ପୁଣି,
'ତୁମେ କ'ଣ କୋଣାର୍କ ଦେଖିଛ ?'

• • •

# ଶିକାର

ସେଦିନ ଆକାଶ ଭରି
ବର୍ଷା,
ବର୍ଷାର ଟୋପାଗୁଡ଼ାକ ସଙ୍ଗୀନ୍ ଧରି
ମାର୍ଚ୍ଚ କରୁଛନ୍ତି ରାସ୍ତାରେ।
ହଲଦିଆ କେଶରର ସିଂହ ପରି
ସୂର୍ଯ୍ୟ ମେଘର ଗୁମ୍ଫାରେ ଲୁଚିଛି।

ବାହାରିଲୁ ବର୍ଷାର ରାସ୍ତାରେ।

ଚାଲିଲୁ ଅନେକ ବାଟ,
ଗ୍ରାମ ଆଉ ହାଟ
ଡେଇଁ, ଲୋକାଳୟରୁ ଦୂର ଜଙ୍ଗଲକୁ,
ଯେଉଁଠି ଗଦବା ଗ୍ରାମର ଡୁଙ୍ଗଡୁଙ୍ଗା ସ୍ତବ୍ଧ ।

ଜଙ୍ଗଲଟା ରହି ରହି କୁନ୍ଥାଉଛି,
ଠିକ୍ ଗୋଟାଏ ପ୍ରସବାତୁରା ନାରୀ ପରି।
ମାଙ୍କଡ଼ ଦମ୍ପତିର କଳିଆ ସରିଛି ଅନେକ ବେଳୁ।

ଏଁଥର ଜନ୍ହ ଆସିବ– ଟିଣର ଜହ୍ନ,
ଥିଏଟରର ପର୍ଦ୍ଦା ପରି କଳା ଆକାଶରେ।
ଆଉ ଆସିବ,
ରବର-ନରମ ପାହୁଲରେ ବାଘ,
ମଣିଷ ଆଉ ଜନ୍ତୁର ଷଡ଼ଯନ୍ତ୍ରକୁ ଉପେକ୍ଷା କରି।
ଆଖି ଦୁଇଟାରେ ତାର
ସାବ୍‌ଲା ପରମ୍ପରାସ୍ୱର ବିଶ୍ୱାସ ଜଳୁଛି।

* * *

# ଜହ୍ନ

ଆକାଶରେ ମେଘ ନାହିଁ,
ଆକାଶଟା ଆଲୋକ-ସମୁଦ୍ର,
ଅସଂଖ୍ୟ ତାରାର ମୁକ୍ତା
ଏଣେ ତେଣେ ବୁଣିଛି ବା କିଏ ?
ଜହ୍ନ, ମୁକ୍ତା ଶିକାରୀ ପରି,
ବୁଡ଼ି ବୁଡ଼ି ମୁକ୍ତା ଗୋଟାଉଛି ।

ଅଥବା

ସେ ଜହ୍ନ,
ଦିଶୁଛି ଗୋଟାଏ ରୂପାର ନାଆ ଭଳି,
ଆକାଶର ସମୁଦ୍ର ପାରି ହେବାକୁ
ମୋଡ଼ୁଛି ତାର ମଙ୍ଗ ।

କିମ୍ବା

ରାତିଟା ଯେତେବେଳେ ଦିଗନ୍ତ ଦେହକୁ
ଆଉଜି ଠିଆ ହୋଇଛି,
ଆକାଶରୁ ଝରୁଛି କୁହୁଡ଼ି ଓ ମେଘ,
ପବନ ଝାଙ୍କୁଛି ମେଘର ଅରଣ୍ୟକୁ,
ଆଉ ଜହ୍ନଟା ଯେମିତି,
ଗୋଟାଏ ଛୁଟନ୍ତା ଧଳା ଘୋଡ଼ାର ସବାର,
ବାଟ ହଜାଇଛି ମେଘର ଅରଣ୍ୟରେ ।

ବା

ତା ପରେ,
କଳା କଳା ଆତତାୟୀ ମେଘ,
ଘେରିପକାନ୍ତି ଜହ୍ନର ଦେହକୁ,
ହାତରେ ତାଙ୍କର ବିଜୁଳିର ଛୁରା ।

ସେତେବେଳେ, ଜହ୍ନକୁ ଦେଖିଛି ମୁଁ,
ଭୟରେ ବିବର୍ଣ୍ଣ,
ଅଦ୍ଭୁତ ପାଣ୍ଡୁର ତାର ମୁହଁ ।

* * *




# ଜାନୁଆରୀ ପହିଲା, ୧୯୫୯

ମୋ ଦେହରେ ପଡୁଛି ସକାଳର ଖରା।
ଟିକି ଚଢ଼େଇ ପରି ଖରାରେ
ମୋ ଦେହ ନାଚୁଛି।

ଆଣ୍ଠୁମାଡ଼ି ବସି ମୁଁ ଦେଖୁଛି ପୃଥିବୀକୁ,
କେଡ଼େ ଉଜ୍ଜ୍ୱଳ, କେଡ଼େ ବିଚିତ୍ର ଏଇ ପୃଥିବୀ,
ଅନାଇ ଦେଖିଲି ଆକାଶକୁ,
ପ୍ରଜାପତିର ଡେଣା ପରି ବର୍ଣ୍ଣାଢ଼୍ୟ
ଆଜିର ଆକାଶ।

ଉଷୁମ ଖରାକୁ ଆଉଜି
ଠିଆ ହେଲି ବହୁତ ବେଳ।

ଏତିକିବେଳେ ମୋର ମନେ ହେଲା,
ମୁଁ ଯିମିତି ହୋଇ ଯାଇଛି,
ଶୀତ ସକାଳର ଟେନାଏ ଖରା।

* * *

# ପାପୁ ପାଇଁ – ଯେ ସମୁଦ୍ର ଦେଖିନାହିଁ

ସମୁଦ୍ର ଗୋଟାଏ ଅତିକାୟ ବୁଢ଼ୀମା କାହାଣୀର ଅସୁରୁଣୀ,
ତା ପେଟ ଭିତରେ,
ଅସଂଖ୍ୟ ଭୁଆବିରାଡ଼ି ରାମ୍ପି ବିଦାରି ହେଉଛନ୍ତି।
ରାଗରେ ସେମାନଙ୍କର ଆଖି ଜଳୁଛି, ରୁମ ଉଠୁଛି ଟାଙ୍କୁରି।

ସମୁଦ୍ରର ରଙ୍ଗ
ରାତିର ଅନ୍ଧାର ପରି,
ଆଉ ସେଥିରେ ମିଶିଛି,
ଦେବଦାରୁ ପତ୍ରର ଶାଗୁଆ-ଶିରା।

ସକାଳରେ ଏଇ ସମୁଦ୍ର,
ଢେଉର ହଜାର ହଜାର ହାତ ଦେଇ
ଲାଲି ସୂର୍ଯ୍ୟକୁ ଧରିବାକୁ ଯାଏ,
ତା'ପରେ ବିଫଳ ହୋଇ,
ଆରମ୍ଭ ହୁଏ ତାର ରୁଷା,
ସେତେବେଳେ,
ମନେହୁଏ ସମୁଦ୍ରଟା ଯେମିତି ଗୋଟାଏ
ରେଳଇଞ୍ଜିନ ମରାମତିର କାରଖାନା,
ଇଞ୍ଜିନର ଅଜସ୍ର ଶବ୍ଦରେ ମୁଖରିତ।

ଏ ସମୁଦ୍ର ହେଲା ଲୁଣିପାଣିର ମରୁଭୂମି,
ଯେଉଁଠି ଟୋପାଏ ହେଲେ ମାଟି ନାହିଁ।

ରାତିର ଜହ୍ନ ତଳେ,
ଏ ସମୁଦ୍ରକୁ ଦେଖିଲେ ଲାଗେ,
ବିରାଟ ଅରଣାମଇଁଷି ପଲ,
ଶିଙ୍ଗ ଟେକି ଆସୁଛନ୍ତି ଭୁଷିବାକୁ
କେତେବେଳେ ପୁଣି
ଏଗୁଡ଼ାକ ପାଲଟନ୍ତି ଅନେକ ଅଜଗର,
ଭିଡ଼ିମୋଡ଼ି ହୁଅନ୍ତି ରଜାପୁଅ ବାସ୍ନାରେ।

ସାଧବ ବୋଇତର ଏଇଠି ସମାଧି,
ଆଉ ସାଧବ ପୁଅର ହାଡ଼ ପରା ମାଛଙ୍କର ଚୁଚୁଆଁ !

ଥରେ ଥରେ ସମୁଦ୍ରର ଢେଉଗୁଡ଼ାକୁ ମନେହୁଏ,
ଏ ଯେମିତି ଅସଂଖ୍ୟ ପୁରୀ-ପଣ୍ଡା
ଭାଙ୍ଗ ଖାଇ ହସରେ ଗଡ଼ୁଛନ୍ତି।
ଭଟା ବେଳେ ଏ ସମୁଦ୍ର ଦିଶେ,
ହିନ୍ଦୁ ବିଧବା ପରି,
ମାଛ ଖାଇବା ଯାହାର ମନା।

* * *

# ଦେହର ଠିକଣା

ମୁଁ ଯଦି ତୁମର ଦେହ ଖୋଜିଯାଏ ଦେଶ ବା ବିଦେଶ,
ପୃଥିବୀର ସବୁ କୋଣ, ଦୂର ନୀଳ ନିରୁଦ୍ଧ ଆକାଶ,
ଶ୍ୟାମଳ ଅରଣ୍ୟଭୂଇଁ ଗୋ-ଚର ଓ ନୀରବ ପାହାଡ଼,
ପୃଥିବୀର ଭୂଗୋଳରେ ନଈ-ନାଳ ଯେତେ କୁଦ-ଗାଡ଼,
ସବୁ ଖୋଜି, ସବୁ ଦେଖି, ପାଇନାହିଁ ମୋହର ଉତ୍ତର
ଦେହର ଦ୍ରାଘିମା ଭିନ୍ନ, ଭିନ୍ନ ପୁଣି ଅକ୍ଷାଂଶ ମନର।
ପୃଥିବୀ ଅନେକ ବଡ଼, ଏ ଜୀବନ ଖଣ୍ଡିତ ସୀମିତ,
ସମୟ-ହ୍ରଦରେ ଖାଲି ଆମେ ସବୁ ହଠାତ୍ ବୁଦ୍‌ବୁଦ।

ତୁମେ ଯଦି ସତ ହୁଅ, ସତ ହୁଏ ଆମର ଏ ପ୍ରେମ,
ସ୍ତିମିତ ତାରାର ତେଜ, ସୂର୍ଯ୍ୟଢ଼ଳା କିରଣର ହେମ।
ତଥାପି ମନରେ ପ୍ରଶ୍ନ, ଦେହ ହୁଏ ଦ୍ୱିଧା ଜର ଜର,
ସବୁ କ'ଣ ଭୁଲିହୁଏ ? ମନ କିମ୍ବା ଲକ୍ଷଣ ଦେହର !

ସମୟର ଜୁଆରରେ ବୁଡ଼ିଯିବ ମନର ମୁହାଁଣ,
ମୋ ସ୍ମୃତିର କୁଟାକାଠି, ଲାଖିଥିବ କେତେ କଥା-ଫେଣ।

* * *

# ପରଶ

ମୁଁ ତୁମକୁ ଛୁଇଁବାକୁ ଚାହେଁ ତୁମର ସମଗ୍ର ସତ୍ତାକୁ ।
ତୁମେ ଯିମିତି ଗୋଟାଏ
ଦରଫୁଟା କଢ଼, ମୋର ଅଙ୍ଗୁଳିର ସ୍ପର୍ଶରେ ମେଲୁଛି ତୁମର ପାଖୁଡ଼ା
ଆଉ ତୁମର ଦେହ, ସୀତାରର ତାର ପରି ଥରୁଛି ସୁଖର ମୂର୍ଚ୍ଛନାରେ
ମୁଁ ଛୁଇଁବାକୁ ଚାହେଁ ତୁମର ଦୁଃଖକୁ,
ତୁମର ସୁଖକୁ, ତୁମର ଦିନକୁ
ତୁମର ରାତିକୁ । ତୁମର ବିସ୍ମରଣ ଆଉ ସ୍ମରଣକୁ ବି ମୁଁ ଛୁଇଁବି ।

ମୋତେ ଛୁଇଁବାକୁ ଦିଅ ତୁମର ବେଦନାକୁ । ଯେତେବେଳେ
ତୁମେ ଘୃଣାରେ ସଙ୍କୁଚିତ ଆଉ ଲଜ୍ଜାରେ ଅଭିଭୂତ
ସେତେବେଳେ ମୋର
ପରଶ ଲାଗୁ ତୁମର ଦେହରେ ।

ମୋ ହାତରେ ପ୍ରେମର କାଉଁରୀ ହାତ । ମୁଁ ଛୁଇଁବି ତୁମକୁ
ତୁମର ଅପ୍ରେମରେ, ତୁମର ମୃତ୍ୟୁର ଅବୟବହୀନତାରେ ଆଉ ସ୍ପର୍ଶ
କରିବି ହୃଦୟକୁ, ଓଠ ଓ ଦାନ୍ତର ପରିଖା ଅତିକ୍ରମ କରି ।

ସେତେବେଳେ ତୁମର ଚେତନା ଆଉ ମୋର ସ୍ପର୍ଶ, ତୁମର
ଦେହ ଓ ମୋର ଦେହ, ତୁମର ହୃଦୟ ଓ ମୋର ହୃଦୟ,
ସବୁ ମିଶିଯିବ ଏକ ସ୍ୱପ୍ନର ପାରାବାରରେ ।

❖ ❖ ❖

# ପ୍ରେମ

ତୁମକୁ ମୁଁ ପାଉଛି ଭଲ ବୋଲି,
ସନ୍ଧ୍ୟା ଆକାଶ ଖେଳୁଛି ନିତି ହୋଲି
କୃଷ୍ଣଚୂଡ଼ା ଫଗୁଣେ ଜଳାଏ ଅଗି;
ସାଗରେ ମିଶେ ନଦୀଟି ନିରବଧି ।

ତୁମର ମୋର ପ୍ରେମର ପରିଣତି,
ଜୀବନ ନୁହେଁ ଯମକ କିମ୍ବା ଯତି,
ଆକାଶ ନୁହେଁ ନିରବଚ୍ଛିନ୍ନ ନେଳି,
ସକାଳଟା କ'ଣ ଝଙ୍କଟିଲର କେଳି ?

ଜାଣିଛି ମୁଁ ତ ଏ ସବୁ କଥାର ମାନେ
ଝଡ଼ର ମେଘ ସର୍ବନାଶ ଆଣେ ।

* * *

# ନାମଟି ତାର

ଫୁଲଟି ନାଁ ଚମ୍ପା,
ମୁଁ ତ ତାକୁ ଜାଣେ,
ଆଖିରେ ଅନୁକମ୍ପା,
ଶ୍ରାବଣ ମେଘ ଆଣେ ।

ଫୁଲଟି ନାଁ ବଉଳ,
ମୁଁ ତ ତାକୁ ଚିହ୍ନେ,
ନ ହୁଏ ଭୁଲି ସହଳ,
ପାଇଛି ଭଲ ଦିନେ ।

ଫୁଲଟି ନାଁ କଇଁ
ପାଇନି ତାକୁ ମୁଁ ଯେ,
ପାହାଡ଼, ବଣ, ନଈ,
ଆଜି ବି ତାକୁ ଖୋଜେ ।

ଠିକଣା ତାର ଜାଣିଛ କ'ଣ ତମେ ?
ଫୁଇଟି କାହିଁ,
ଫୁଇଟି ନାହିଁ,
ଫୁଲଟି ପାଇଁ,
ପବନ ଧଇଁସଇଁ,
ଫୁଲଟି ନୀଳ କଇଁ ।

* * *

# କାମନା

ଝରକାଟା ଖୋଲିଦିଅ, ମୁଣ୍ଡ ପାଖର ସେହି ସାନ ଖିଡ଼ିକିଟି,
ଖରା ଆସୁ
ଘର ଭିତରକୁ— ପୀତାଭ ମୁଠାଏ ଗାଢ଼ ଖରା। ଖରା
ଆସି ଅପେକ୍ଷା କରୁଛି ବାହାରେ।
ପାଖ ଛାତର କାର୍ଣିସ ଉପରୁ ଓହ୍ଲାଇ
ପଡ଼ି ଏଇ ଖିଡ଼ିକି ପାଖରେ ଆସି ଆମକୁ ଉଣ୍ଡୁଛି ଅନେକ ବେଳୁ।

କାଲି ରାତିସାରା ଏ ଖଟଟା ଗୋଟାଏ ମାତାଲ
ଡଙ୍ଗା ପରି ଦୋହଲିଛି, ଢେଉର ଅଜସ୍ର ତାଡ଼ନାରେ। ତା'ପରେ
ହୁଏତ ଡଙ୍ଗାଟା ହଠାତ୍ ଯାଇଛି ବୁଡ଼ି। ଆଉ ଢେଉଗୁଡ଼ାକ
ସେମାନଙ୍କର ହଜାର ହଜାର ଫଣା ଟେକି ଚୋଟ ମାରିଛନ୍ତି ଅବିଶ୍ରାନ୍ତ
ସେତେବେଳେ ମୁଁ ତୁମର ଦେହଟାକୁ ଜାବୁଡ଼ି ଧରିଛି ବଞ୍ଚିବାର
ପରମ ଆଗ୍ରହରେ। ତୁମ ଦେହଟାକୁ ମନେ କରିଛି ସେଇ
ଭଙ୍ଗା ଡଙ୍ଗାର ଭାସି ଯାଉଥିବା ମଙ୍ଗ ବୋଲି।

ତା'ପରେ ଏଇ ସାନ କୋଠରୀ ଭିତରେ ପଡ଼ିଛି
ତୁମ ଦେହର ନିଷିଦ୍ଧ ଭୂଗୋଳ। ମୁଁ ଯିମିତି ଜଣେ ଭୂପର୍ଯ୍ୟଟକ
ଯାହାର କମ୍ପାସ ଓ ମାନଚିତ୍ର ଯାଇଛି ହଜି। ତୁମ ମୁହଁଟାକୁ
ହାତରେ ଟେକି ଦେଖିଛି ବହୁତ ବେଳ— ଏ ଯିମିତି କେଉଁ ଦୂର
ଦ୍ୱୀପର ଅଜଣା ଫଳ। ଓଠଟାକୁ ଚୁଚୁମିଛି ପ୍ରାଣପଣେ, ସେଟା
ଯିମିତି ସିଠାବିହୀନ କୋଳାଏ କମଳାଲେମ୍ବୁ, ଆଉ ତୁମ ଜିଭରେ
ମୋର ଦାନ୍ତ ମାଜି ନେଇଛି ବାରମ୍ବାର। ତୁମର ସ୍ତନଯୋଡ଼ିକ
ମୋର ହାତମୁଠାରେ ଥରିଉଠିଛି ଥରକୁ ଥର, ଠିକ୍ ଯିମିତି
ହଳେ ଧଳା ପାରା ଉଡ଼ିବାକୁ ଡେଣା ବାଡ଼ଉଛନ୍ତି।
ତା'ପରେ ଯେତେବେଳେ
ତମର ଗରମ ନିଶ୍ୱାସ ମୋ ମୁହଁରେ ଆସି ବାଜୁଛି,
ଆଉ ମୋ ଦେହର
ହାଡ଼ଗୁଡ଼ାକ ସବୁ ଯାଉଛି ପାଣି ଫାଟି, ସେତିକିବେଳେ ମୁଁ ଓହ୍ଲାଇ
ପଡ଼ିଛି ତୁମ ଜାନୁର ଅମୁହାଁ ସୁଡ଼ଙ୍ଗ ଭିତରକୁ— ଯେଉଁଠି
ରାତିର ସବୁ ଅନ୍ଧାର ଆସି ଚକ୍ରାନ୍ତ କରୁଛନ୍ତି।

ଉଠ, ଖିଡ଼ିକିଟା ଖୋଲିଦିଅ। ତୁମର ଦେହଟା,
ତୁଳିମୁଣ୍ଡର ବିଲେଇ ପରି, ଜାକିଜୁକି ଶୋଇଛି ନିଦର ଆରାମରେ।
ଖିଡ଼ିକିବାଟେ ମେଞ୍ଚାଏ ଧିକ୍କାର ବିଞ୍ଚି ଖରା ଆସୁ ଘରକୁ।
ଦୁନିଆଁ ଆମର ନାଁ ଜାଣିଲାଣି।

* * *

# ବାହୁଡ଼ା

ସେଦିନ ସନ୍ଧ୍ୟାରେ ତୋଟାର ଆମ୍ବଗଛମାନେ ଫୁସ୍‌ଫାସ୍ ହେଉଛନ୍ତି ।
ପୃଥିବୀର ଅନ୍ଧାରଗୁଡ଼ାକ ଆମ୍ବଗଛର ଡାହି ଧରି ଫଳ ପରି
ଓହଳିଛନ୍ତି । ସମୟ ଗୋଟାଏ ବିରାଟ ବିଲେଇ,
ରବରର ପେଣ୍ଡୁ ପରି
ମୋ ସ୍ମୃତିକୁ ଧରି ଖେଳାଉଛି । ତାର ଲୋମଶ ପାହୁଲରେ ମାରୁଛି
ସାନ ସାନ ଚାପୁଡ଼ା ।

ମୁଁ ଯିମିତି ସେଇ କ୍ଲାନ୍ତ ଡେଣାର ଚିଲ । ସନ୍ଧ୍ୟା ପରି
ଧୂସର ଯାହାର ଡେଣା ।
ଉଡ଼ନ୍ତା ବୃତ୍ତ ଭିତରୁ ଦେଖୁଛି ତଳର ପୃଥିବୀକୁ
ହେଇ, ଦୂରରେ ଶୁଖିଲା ନଈ । ତା ଛାତିରେ ଧଳା ସରୁ ବାଲିର
ଯୋଡ଼ିଏ କୁନ୍ଦ— ନାରୀର ସ୍ତନ ପରି ଘନିଷ୍ଠ ।
ରାତିର ସମୁଦ୍ରରେ ଭାସମାନ ଦ୍ୱୀପ ପରି ଜହ୍ନ ଦିଶୁଛି,
ଆକାଶରେ । ମୋ ସାନ ଘରଟିକୁ ମୁଁ ଦେଖୁଛି, ଜହ୍ନ ଆଲୁଅରେ
ଧଉଳା ସେ ଘରର ଖିଡ଼ିକିରେ ନେଳି ଆକାଶର ପର୍ଦ୍ଦା ।
ବାଡ଼ିପଟର ପୋଖରୀଟା ଯେମିତି ଗୋଟାଏ ଘାସପଡ଼ିଆ, ସବୁଜ
ଦଳରେ ଆଚ୍ଛନ୍ନ ହଂସଗୁଡ଼ାକ ପଲେ ଗାଈ ପରି ଆଉ ଚରୁନାହାନ୍ତି ।
ଗୋଳିଆ ବଳ୍କି ପାଣି ପରି ଜହ୍ନଆଲୁଅ ତଳେ
ମୋ ବଗିଚାର ଗଛଗୁଡ଼ାକ
ବିଷଣ୍ଣ ଓ ନିର୍ବାକ । ସେମାନେ ଚନ୍ଦ୍ରେଇର କଣ୍ଠସ୍ୱର ଦେଇ କଥା
ଆଉ କହୁ ନାହାନ୍ତି ପରସ୍ପରକୁ ।
ଜୁଳୁଜୁଳା ପୋକମାନେ ଲଣ୍ଠନ ଧରି
ଘରକୁ ଫେରୁଛନ୍ତି । ସେତେବେଳେ ବସିବା ଘରର ଭଙ୍ଗା ବେତଚଉକି
ଗୁଡ଼ାକ ପ୍ରଚୁର ବିସ୍ମୟ ଘିନି ଦେଖୁଛନ୍ତି କାର୍ପେଟ ଓ ଉଲର
ରୋମାଞ୍ଚକର ସାନ୍ନିଧ୍ୟରେ ତିଆରି କାଚ-ବନ୍ଧେଇ 'ପତି ପରମ ଗୁରୁ'
ଛବିଟିକୁ । ପବନରେ ହଳଦିପତ୍ରର ବାସ୍ନା । ନୂଆ କୁଟା ଖିଲ ପରି
ଜହ୍ନର ମୁହଁ । ପୋଇବାଡ଼ିର ମେଞ୍ଚିଡ଼ିଗୁଡ଼ାକ ପ୍ରତୀକ୍ଷାରେ ଫାଟି
ପଡୁଛନ୍ତି । ମୁଁ ଯଦି ଘରକୁ ଫେରେ !

* * *

# ସ୍ତନ

ମୁଁ କେତେଥର ନିଜକୁ ଭାବିଛି ମାଛ ବୋଲି ।
ସେଇ ଅସ୍ଥିରତା ଆଉ
ଅସହ୍ୟ ଯନ୍ତ୍ରଣାର ପ୍ରବାହରେ ପୀଡ଼ିତ । ଘାଇ ମାରୁଛି ତୁମ ଚାରିପଟେ
ଯେତେବେଳେ ତୁମେ କଟାକ୍ଷ ଓ ହସର ଚରେଇ ପକେଇ ତୁନିତାନି
ବସିଛ । ତୁମର ଦେହର ବନସିରେ ସ୍ତନର ଥୋପ ଗୁନ୍ଥି ମୋତେ
ପ୍ରଲୁବ୍ଧ କରୁଛ ବାରମ୍ବାର ।
ତୁମର ସ୍ତନ ଦୁଇଟାକୁ ମୁଁ ଭାବିଛି ସେ ଦୁହେଁ
ଯେମିତି କୋଣାର୍କର ମୁଣ୍ଡି ଉପରେ ଥିବା ଚୁମ୍ବକ । ଆଉ ମୁଁ ସେହି
ସୁଦୂରର ବୋଇତ, ଯେ କ୍ରମାଗତ ପାଖେଇ ଆସୁଛି ତୀବ୍ର
ଆକର୍ଷଣରେ ଘୋଷାରି ହୋଇ, ଭାଙ୍ଗି ଚୂରମାର ହୋଇଯିବାକୁ
ତୁମ ଦେହର ଉପକୂଳରେ ।

କାମନାର ସମୁଦ୍ରରେ ଯେତେବେଳେ ଝଡ଼ ଆସେ, କଳା
କଳା ଢେଉଗୁଡ଼ାକ ହୋଇଉଠନ୍ତି ଉତାଳ— ସର୍ବଗ୍ରାସୀ । ସେତେବେଳେ
ମୋର ଦେହର ଜାହାଜ ଦିଗ ହଜାଏ । ରିପୁର ତାଡ଼ନାରେ ଧନ୍ଦିହୁଏ,
ଭୁଲରେ ଭାବେ, ଏ ସ୍ତନ ଦୁଇଟା ସେଇ ସମୁଦ୍ରରେ ଭାସମାନ
'ବୟା' ବୋଲି, ଯେଉଁଠି ସେ ପାଇବ ଲଙ୍ଗର ପୋତିବାର
ନିଶ୍ଚିନ୍ତ ଆଶ୍ରୟ ।

କେତେବେଳେ ମୋତେ ଲାଗିଛି ତୁମେ ସେଇ ପୁରାଣ-ପ୍ରସିଦ୍ଧ
ଅର୍ଦ୍ଧନାରୀଶ୍ୱର ଦେବତା ।
କେତେବେଳେ ବା ମନେ ହୋଇଛି
ତୁମେ ଜଣେ ଯାଦୁକରୀ ।
ଥରେ ଥରେ ତୁମର ଛାତି ଦିଶିଛି କିଶୋରର
ଛାତି ପରି ସମତଳ,

ପୁଣି କେତେବେଳେ ସେଥିରୁ ବାହାରିଛି ଯାଆଁଳା
ଧଳା ଠେକୁଆ, ମଖମଲ ପରି ମସୃଣ ଯାହାର ଦେହ,
ଆଉ ଆକୃତିରେ
ଯେ ଦୁହେଁ ପରସ୍ପରର ସମ୍ପୂର୍ଣ୍ଣ ସମାନ।
ତୁମର ଭେଲିକି ଦେଖି ମୁଁ ହୋଇଛି ହତବାକ୍।

ଦିନେ ଦିନେ ଏ ସ୍ତନ ଦୁଇଟାକୁ ମନେ ହୋଇଛି ଥଣ୍ଡା ଆଉ
ମୃତଟାଣ ମାର୍ବଲରେ ତିଆରି କବରଖାନାର ଦୁଇଟି ସମାଧି, ମସଜିଦ୍‌ର
ଗମ୍ବୁଜର ଆକାରରେ ଗଢ଼ା। କିମ୍ବା ଏ ଦୁହେଁ ଜ୍ୟୋତିମଣ୍ଡଳର
ଯୁଗଳ ଗ୍ରହ– ସୂର୍ଯ୍ୟ ଆଉ ଚନ୍ଦ୍ର।

ଶୀତ ରାତିରେ ଏ ସ୍ତନକୁ ଲାଗିଛି ଚୁଲ୍ଲୀରୁ ସଦ୍ୟ ନିଷ୍କାସିତ
ଯୋଡ଼ିଏ ଉଷ୍ଣ ଫୁଲା ରୁଟି ପରି। ତା'ପରେ– ରାତିର ଆକାଶରେ
ତାରା ସବୁ ଯେତେବେଳେ ନିଭିଯାଇଛି, ସେତେବେଳେ ବିନିଦ୍ର
ବିଛଣାରେ ଶୋଇ ଶୋଇ ଭାବିଛି, ଏ ସବୁ ମିଛ, ସ୍ତନ ଦୁଇଟା
ମନ-ଫରୁଆ ଉପରର ଢାଙ୍କୁଣି କେବଳ।

* * *

# ଗାନ୍ଧିଜୀ

ଆମେ ସବୁ ତର୍କ କରୁ,
ତାହାକଠୁ ସାମନାରେ ରଖି,
ନାକ କୁଞ୍ଚି ଆଖିକି ତରାଟି ।

ହାତରେ ଆମର ତାସ,
ରଜାରାଣୀ, ଗୋଲାମ ବା ଟିକା,
ହଠାତ୍ ରାସ୍ତାରେ କିଏ କହିଦେଲା—
'ଗାନ୍ଧିଜୀ ନାହାନ୍ତି ।'
ଆମ ହାତ, ଆମ ଖେଳ, ସବୁ ଚୁପ୍,
ଆମେ ସବୁ ହତବାକ୍— ବିସ୍ମୟରେ ଥକା ।

ସେତେବେଳେ ଆକାଶରେ ଏତେ ରଙ୍ଗ
କିଏ ଦେଲା ବୋଲି ?
ସୂର୍ଯ୍ୟ କ'ଣ ରକ୍ତ ଘିନି ନିଜ ସଙ୍ଗେ
ଖେଳୁଥିଲା ହୋଲି ?

ରାସ୍ତାରେ କଳା କଳା ଜନ୍ଦା
ପରି ମଣିଷର ମନ୍ଦା,
ସେମାନେ ଖୋଜୁଛନ୍ତି କାହାକୁ ବା ଏତେବେଳେ ?
ଚେତନାର ସବୁ ସିଡ଼ି, ସୁଡ଼ଙ୍ଗର କନ୍ଦି ଓ ବିକନ୍ଦି,
ଖୋଜିଲେ ବି ଶେଷ ନାହିଁ, ଏ ଗୋଲକଧନ୍ଦା ।




ସେଦିନ ଚଢ଼େଇ ସବୁ ଫେରୁଥିଲେ
ଯେ ଯାହାର ନୀଡ଼,
ସେମାନେ ଦେଖିଲେ ଚାହିଁ,
ଯମୁନାର ପାଣି, ସୁଅ, ତରଙ୍ଗରେ
ଖାଲି ରକ୍ତ ଭିଡ଼।

ସେ ପାଣିରେ ଲୁଚି ଲୁଚି
ନକ୍ଷତ୍ରର ଆଖି ଆଲୁଅ।ଲେ,
ହାତ ତାର ଧୋଉଥିଲା ସେ ଏକ ଯୁବକ;
(ଯେତେ ହାତ ଧୋଇଲେ ବି ହାତରୁ ତା ଛାଡ଼ି ନାହିଁ ଦାଗ।)
ଧୋଉ ଧୋଉ ସେ ହାତରୁ ଉଡ଼ିଗଲା ଫାଳେ।

ଦିଲ୍ଲୀର ଶୀତ ପରି ସେ ଏକ କାଲୁଆ ଯୁବକ,
ବ୍ୟାଧ ପରି ନିଷ୍ଠୁର ସେ, ନାହିଁ ଚିନ୍ତା ଦକ,
ପଚାରିଲେ କ'ଣ ତାର ନାମ,
ସେ କହିବ, 'ମୁଁ ତ ନାଥୁରାମ।'

ଆଉ ଠିକ୍ ସେତେବେଳେ ଦିଲ୍ଲୀ ଆକାଶ ଚିରି,
ପବନରେ ପହଁରି ପହଁରି,
ନରମ କାନ୍ଦଣା ପରି,
ଆସୁଥିଲା ଭାସି ଏକ ସ୍ୱର—
'ରଘୁପତି ରାଘବ ରାଜାରାମ;
ପତିତପାବନ ସୀତାରାମ!'
ହା ରାମ, ହାୟ ନାଥୁରାମ!

* *

# ମ୍ୟାଗ୍ନୋଲିଆ

ଚଢ଼େଇଟି ହାୟ କେଉଁଠି ଗଲା ହଜି,
ଇନ୍ଦ୍ରଧନୁର ରଙ୍ଗରେ ଗଢ଼ା ଡେଣା,
ଗହନ କେଉଁ ବନେ ତା' ମନ ମଜି
ଯାଇଛି ସତେ, ଶୁଝିବ ନାହିଁ ଦେଣା ?

ଚଢ଼େଇଟି ହାୟ କେଉଁଠି ଗଲା ଉଡ଼ି,
ବାନ୍ଧିଲା ନୀଡ଼ କେଉଁ ସେ ବନସ୍ପତି,
ଛନ୍ଦିଲା ତାଳର ସ୍ୱପନେ ଗଲା ବୁଡ଼ି,
ପଡ଼ିଛି ଏକା, ନିଶୂନ ଚଉକତି ।

ଚଢ଼େଇଟି ମୋର ଆସିବ ସତେ ଫେରି,
ଦେହରେ ତାର ଠିକଣା ଆକାଶର,
ପ୍ରବାଳ ଓଠ ଥରାଇ ଥିରି ଥିରି,
ରକତ ମୋର ଛୁଇଁବ ତା'ରି ସ୍ୱର ।

ଚଢ଼େଇ ସେ ତ ଚଢ଼େଇ ନୁହେଁ ଖାଲି,
ଆଖିରେ ତାର ଜଳୁଛି ହୀରା ମୋତି,
ଭୁଲିନି ତାକୁ, ଭୁଲିନି ତାର ଚାଲି,
ଭଙ୍ଗା ପଞ୍ଜୁରି ଝୁରୁଛି ତାକୁ ନିତି ।

ନିବିଡ଼ କେତେ ମୁହୂର୍ତ୍ତ ନେଇ ଥଣ୍ଟେ,
ସାତ ସାଗର ଦୂରେ ସେ ପଳାତକ,
ଘୁମୁରେ ମନ, ଦିନ ରାତି ନ ଅଣ୍ଟେ,
ତାହାରି ଛାଇ ଦିଶୁଛି ଝକ ଝକ ।

ନିଶିଥିନୀର ଚପଳ ପାରାବତ,
ଜୀବନ-ନଦୀ ଯାଉଛି ଶୁଖି, ଶୁଣ,
ଅନେକ ଜନ୍ମ, ଅନେକ ତାରାଗଣ,
ଆସିବ ପୁଣି, ଶୁଝିବ ତୁମ ଋଣ ?

* * *

# ବିହଙ୍ଗ– ହେ ବିହଙ୍ଗ

ଆକାଶେ ଝଡ଼, କଳାମୁଗୁନି ରାତି,
ସାଗର ଢେଉ ଗରଜେ ଶଙ୍ଖଚୂଡ଼,
ତୁମର ମୋର ମିଳନ ବିହଙ୍ଗମ,
ହଜାଏ ଦିଗ, ନୀରବ ତାର ତେଣା।

ଅନେକ ଝଡ଼, ପବନ ଭୁଜଙ୍ଗିନୀ,
ମାତାଲ କେଉଁ ନିଶାରେ ଟଳମଳ,
ତୁମର ମୋର ଖୁସିର ବିହଙ୍ଗମ,
ପାଇନି ଖୋଜି ଦିଗନ୍ତର ସୀମା।

ଝଡ଼ରେ ଭାସେ ସ୍ମୃତିର କୁଟାକାଠି,
ସତ୍ତା ମୋର ଝଡ଼ା ପତର ପରି,
ଯାଉଛି ଉଡ଼ି, କାହିଁ ସେ ଆୟୁଷ୍ମତୀ,
ପାରିବ ଧରି ବିଗତ ସବୁ ଦିନ ?

ଆସିଛି ଝଡ଼, ଝଡ଼ର ହଜାର ହାତ,
ମୁଁ ଓ ତୁମେ କେଉଁଠି ଗଲୁ କିଏ ?
ମୁଠାରେ ଝଡ଼ର ଥରୁଛି କୃଷ୍ଣଚୂଡ଼ା,
ଝଡ଼ର ସେତୁ ପାରିବା ପାରି ହୋଇ ?

ଯଦି ବା ଥମେ ଝଡ଼ର ମାତଲାମି,
ଧରିବା ହାତ ପରସ୍ପରର ହାତ,
ଯେ ହାତ ଦିନେ ପାଲଟି ପାରାବତ,
ଆକାଶେ ଢାଳିଥିଲା ସେ ଅରୁନ୍ଧତୀ।

* * *

# ପ୍ରାପ୍ତି

ତୁମକୁ ମୁଁ ପାଇଛି ବୋଲି ଆଜି,
ଦୁର୍ବାର ଏକ ଅଜଣା ଆଲିଙ୍ଗନ,
ରକ୍ତ ଆଉ ନିଃଶ୍ୱାସକୁ ଲୁଟି,
ପଡ଼ିଛି ଧରା ବାହୁର ବନାନୀରେ ।

ତୁମର ଦେହ ଛାଡ଼ି ସକଳ ବ୍ରୀଡ଼ା,
ଥରୁଛି କେଉଁ ସ୍ୱେଦାକ୍ତ ସ୍ପନ୍ଦନେ,
ଇତସ୍ତତଃ କେଶର ଅନ୍ଧକାର,
ଓଠରୁ କ୍ଷରେ ଲକ୍ଷ ଚୁମାର ଦ୍ୟୁତି ।

ଆଖି ତୁମର ମୁଦା ଶାମୁକା ଦୁଇ,
ଭ୍ରୂଲତା ଦିଶେ ମୁକ୍ତ ଡେଣା ଚିଲ,
ମୁଁ ଯେହ୍ନେ ଏକ ଉଚ୍ଛୁଳା-ସ୍ରୁଅ ନଈ,
ମିଶିବି ତୁମ ଦେହର ବାରିଧିରେ ।

ମୁଁ ବୋଧେ ସେହି ଦଗ୍‌ଧ ଦିନର ଖରା,
ପ୍ରଜ୍ୱଳିତ ବ୍ୟର୍ଥ ଦହନରେ,
ଧୋଇବି ମୋର ପ୍ରତୀକ୍ଷାର କ୍ଲେଦ,
ଶୀତଳ ତୁମ ଦେହର ସରସୀରେ ।

ଯଦି ମୁଁ ହୁଏ ବିଶାଳ ମହୀରୁହ,
ଶାଖାପ୍ରଶାଖା ମେଲାଇ ଚଉକତି,
ତୁମେ ହେବ ମୋର ଗହନ-ନିବିଡ଼ ଛାଇ,
ଅବିଚ୍ଛେଦ୍ୟ ପ୍ରଗାଢ଼ ବନ୍ଧନେ ।

* * *

# ଝଡ଼, ତୁମେ ଆଉ ମୁଁ

ମେଘ—ମେଘ—ମେଘ,
ତୁମକୁ ଆଜି ମନେ ପଡୁଛି ଭାରି,
ଆକାଶୁ ଝରେ ତୁହାକୁ ତୁହା ବାରି,
ପବନ ଘୋଡ଼ାର ବେଗ।

ଖୋଜି ତୁମକୁ ପାଉନି, ଆଜି ଝଡ଼,
ହୃଦୟ ଯାଏ ଭରି ତୁମରି ସ୍ମୃତି,
ହଜିବ ଯଦି ଆଜି ମୋହର ଧୃତି,
ରହିବ ତୁମେ ଦୂରେ ପାଲଟି ଜଡ଼?

ଆକାଶେ ଡାକେ ମେଘର ଐରାବତ,
ତୁମକୁ, ମୋତେ, ଯେତେ ଆମରି ପରି,
କାହିଁକି ନେଲ ନିର୍ବାସନ ବରି?
ଧୋଇବା ଚାଲ ଦୁହେଁ ଛାତିର କ୍ଷତ।

ଗରଜେ ପବନ ଲକ୍ଷ ଅଜଗର,
ବରଷା, ରାତି, ଝଡ଼ର ବିଭୀଷିକା,
ଆକାଶେ ନାଚେ ଶତ ବିଜୁଳିଶିଖା,
ମନ ମୋ ତୁମ ସ୍ମୃତିରେ ଜରଜର।

ଆସିବ, ଯଦି ଡେଇଁ ନିଷେଧ ଗାର,
ଦୁହେଁ ତ ଯିବା ପରସ୍ପରେ ମିଶି,
ପାରିବ ପୁଣି ବିଚ୍ଛେଦର ନିଶି,
ଝଡ଼ରେ ଆମେ ହୋଇବା ଏକାକାର।

* * *

# ନଦୀ, ନାରୀ ଓ ନକ୍ଷତ୍ର

ବସନ୍ତ ଆସିଛି ଆଜି ହାତେ ଧରି ଫୁଲର ପତାକା,
ମୃତ ଗଛ ଶରୀରରେ ଭରିଦେଇ ବଉଳ ମହକ,
ନିଛାଟିଆ ଆମ୍ବତୋଟା ଶିହରିତ ବାସ୍ନାର ପ୍ଲାବନେ,
ଭଲ ମୋତେ ଲାଗୁନାହିଁ ଏ ବସନ୍ତେ କୋଇଲିର ଡାକ।

ସମଗ୍ର ସତ୍ତାକୁ ମୋର ସମୟର ଉଦ୍ୟତ କରତ,
ନିଦ୍ରାହୀନ ଯନ୍ତ୍ରଣାରେ କାଟେ ବସି ତିଳ ତିଳ କରି,
ସୁଷମା, ଲାବଣ୍ୟ ଆଉ ମେଦ-ମଜ୍ଜା ଦେହର ଚିକ୍କଣ,
ସବୁ ମୋର ଅପଗତ, ପଡ଼ିଛି ମୁଁ କଙ୍କାଳ ଆବୋରି।

କିଏ ଅବା ଜାଣିଥିଲା ବସନ୍ତରେ ଏତିକି ବିରହ।
ହୃଦୟକୁ ଚିରି ଚିରି ଶୋଣିତରେ ଢାଳି ଦେଲା ଦାହ,
ଓଠରେ ମୋ ହସ ନାହିଁ, ଆଖିରୁ ମୋ ନିଦ ପଳାତକ,
କେମିତି କାଟିବି ଦିନ, ମାସ, ବର୍ଷ, ଜୀବନ ପ୍ରବାହ ?

ତୁମେ ତ ଯାଇଛ ହଜି ସମୟର ଅତଳ ଗହ୍ୱରେ,
ମୁଁ ଏଠି ପଡ଼ିଛି ଏକା— ଅବିନ୍ୟସ୍ତ ବିଭକ୍ତ ଆକାଶ,
ମୁଁ ସହିଛି କେତେ ଖରା, ବର୍ଷା ଆଉ ଶୀତର ପରଶ,
ରଙ୍ଗ ମୋର ଫେରିଲାନି, ରହିଗଲି ପୋଡ଼ା-ଥୁଣ୍ଟା ଘାସ।

ନାରୀ ତୁମେ ଅଟ ପରା ପ୍ରମତ୍ତା ଫେନିଳ ଏକ ନଦୀ,
ବନ୍ୟାରେ ଟଳମଳ ମିଶିବାକୁ ଦୁରନ୍ତ ବାରିଧି ?
ତୁମେ ଯଦି ଗ୍ରାସ ମୋତେ, ମୋ ଦେହରେ ଯିବାକୁ ବିଚରି,
ମୁଁ ରହିବି ଉଜାଗର ତୁମ ପାଇଁ କାଳ ନିରବଧି।

ମୁଁ ହସିବି ସେତେବେଳେ କାମୁକର ନିର୍ଲଜ ଉଲ୍ଲାସେ,
ଆକାଶରେ ଚନ୍ଦ୍ର ଏକ ଝୁଲୁଥିବ କାନିଫଟା ଗୁଡ଼ି,
କିମ୍ବା କେଉଁ ଧୋବା ଲୁଗା ଶୁଖୁଅଛି ଶିରୀଷର ଡାଳେ,
କ୍ଲାନ୍ତ ରତି କାମନାରେ ନୂଆ କରି ଯିବି ମୁହିଁ ବୁଡ଼ି।

ମୁଁ ଜାଣିଛି ଏ ଜୀବନେ ହାହାକାର ଯେତେକ ହତାଶା,
ରାତିର ଆକାଶ ଭରି ଦୀର୍ଘ ଏକ ଚିତ୍କାର ପରି,
ଦୁଃସହ ବେଦନା ସମ ଥରି ଥରି ପଞ୍ଜରା ଭିତରୁ,
କେତେବେଳେ ଅଜାଣତେ ଆସେ ତାହା ଆପେ ଇ ବାହାରି।

ଏଠି ଖାଲି ଅପଯଶ, ନୀରବତା, ତିକ୍ତ ବିଡ଼ମ୍ବନା,
ଏ ପୃଥିବୀ ସବୁ କୋଣ ଭରିଅଛି ଅସହ୍ୟ ଅନ୍ଧାର,
ଚାଲିଯିବା ଆଉ ଏକ ନକ୍ଷତ୍ରରେ ବାନ୍ଧିବାକୁ ଘର,
ଯେଉଁଠି ଜୀବନ ହସେ ଉଦ୍‌ବେଳିତ ଯୌବନ ସମ୍ଭାର।

❖ ❖ ❖

# ଭାରତବର୍ଷ

ତୁମେ ଅଛ ଦେହ-ମନ, ଶୋଣିତର ଉତପ୍ତ ଧାରାରେ,
ନିଃଶ୍ୱାସ, ପ୍ରଶ୍ୱାସ, ଚିନ୍ତା, ମନନର ଅବ୍ୟକ୍ତ ଦ୍ୱିଧା,
ସବୁକୁ ଆଚ୍ଛନ୍ନ କରି ଅପ୍ରମେୟ ଆସକ୍ତିର ପରି,
ତୁମେ ମୋର ଜାଗରଣ, ସ୍ୱପ୍ନ ପୁଣି ଜୀବନର ସୁଧା ।

ତୁମରି ପବନ-ପାଣି ଗଢ଼ିଅଛି ଏ ପରାଣ ମୋର,
ତୁମରି ମାଟିର ସ୍ତନ୍ୟ ପାନ କରି ହୋଇଅଛି ବଡ଼ ।
କେମିତି ଶୁଝିବି ତୁମ ନଦୀ, ଗିରି, ଆକାଶର ଋଣ,
ତୁମେ ନାହଁ ମୋ ନିକଟେ ଭାବୁ ଭାବୁ ପାଲଟିବି ଜଡ଼ ।

ତୁମରି ମାଟିର କୋଳେ ଆମେ ଖେଳୁ ଯେତେ ଯେଉଁଠାରେ,
କାଶଫୁଲ, ମେଘ ଦେଖୁ ଆକାଶରେ ବଳାକାର ଗତି,
ନିଛାଟିଆ ନଈପଠା, ଫେନଶୁଭ୍ର ସାଗରମେଖଳା,
ଝଡ଼ର ଦୁନ୍ଦୁଭି ଶୁଣି, ଅସ୍ଥିର ମଦିର ହୁଏ ମତି ।

ତୁମେ ମୋର ପାପ-ପୁଣ୍ୟ, ଜନ୍ମ ପୁଣି ମୃତ୍ୟୁର ପରିଖା,
କେଉଁଠି ବିଦେଶେ ଗଲେ ଓଟାରି ଧରିଛ ମୋର ନାଡ଼ି,
ଆଶ୍ଚର୍ଯ୍ୟ ଗଛଲତା, ଏ ମାଟିର, ଅଦ୍ଭୁତ ଘ୍ରାଣ,
ନ ପାରେ ରହି ମୁଁ ସେଠି ଦଣ୍ଡେ ହେଲେ ଏ ସବୁକୁ ଛାଡ଼ି ।

ଗ୍ରୀଷ୍ମର ନିଦାଘ ଆଉ ବର୍ଷାର ନିବିଡ଼ କାରୁଣ୍ୟ,
ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା ସବୁ ଅଛ ଶରୀରରେ ଧରି,
ତୁମେ ମୋର ପିତା-ମାତା, ସ୍ୱର୍ଗ-ମର୍ତ୍ତ୍ୟ, ପ୍ରିୟାର ପ୍ରତୀତି,
ମୋ ଆଖି ଉହାଡ଼ ହେବ, କେତେ ଉଚ୍ଚ ନୀଚର ପାଚିରି । ***

# ଆକାଶର ଉତ୍ସ

ତୁମେ ଆସି ଏଇଠି ଠିଆହେଲ, ଏଠି ଦିଗନ୍ତ ନାହିଁ।
କେବଳ ପରିବ୍ୟାପ୍ତ
ଆକାଶର ପ୍ରଗାଢ଼ ଅନ୍ଧକାର।
ତୁମେ ନୀଳିମା ଦେଖିବାକୁ ଭଲ ପାଉଥିଲ।
ମୁଁ ସେତେବେଳେ ବେକେ ଅନ୍ଧାରରେ ଦଣ୍ଡାୟମାନ। ତୁମେ ତଥାପି
କାନ୍ଦିନ। ଛାତି ଭିତରର ଅର୍ଗଳ ଭାଙ୍ଗୁ ଭାଙ୍ଗୁ ଭାଙ୍ଗିଲା ନାହିଁ।
ଆକାଶରେ ପଲେ ଡାହାଣୀ ପରି ଅଜସ୍ର ଅନ୍ଧାର। ଆଉ ମୋ
ରକ୍ତର ଗଭୀରରେ ଗୋଟାଏ ଆକୁଳ ଆଲୋଡ଼ନ। ଯେମିତି ଚଢ଼େଇ
ସବୁ ଚକିତ ଉତ୍ତେଜନାରେ ଉଡ୍‌ଡୀନ।

ମୋର ଶରୀର ଘାସର ଶୀତଳ ଶଯ୍ୟାରେ ବିନ୍ୟସ୍ତ।
ସ୍ମୃତିଟା ଖଦ୍ୟୋତ ଭଳି ରହି ରହି ଆଲୋକ ବର୍ଷୁଛି।
ତୁମେ କ'ଣ ମୋ ଦେହରୁ
ଖୋଲି ନେଇପାରିବ ଲଜ୍ଜାକୁ ? ଛାତିର ପଞ୍ଜୁରି
ଫିଟାଇ ମୁକ୍ତ କରି ପାରିବ ଯନ୍ତ୍ରଣା ?

ତେବେ ଚାଲ ଆଲୋକର ସୀମାହୀନ ସମୁଦ୍ର
କେଉଁଠି ତଲାସିବା ! ଚକ୍ରବାଳର ଉପକୂଳରେ ମୁଁ ହେବି
ନିହାତି ନାବିକ। ନିଃସୀମ ନୀଳିମାରେ ଯଦିଓ ବା ମୋ
ପୌରୁଷ ଦିଗଭ୍ରଷ୍ଟ ହୁଏ, କିମ୍ବା ଡେଣା ମୋର ଅସହ୍ୟ
ଉତ୍ତାପରେ ହୁଏ ଦ୍ରବୀଭୂତ। ମୁଁ ଆକାଶର ଉତ୍ସର
ସନ୍ଧାନରେ ଯିବି। ଯେଉଁଠି ସେ ଅସୀମ ପ୍ରଶାନ୍ତିରେ ବିଧୃତ।

# ଧୂସର ହେମନ୍ତ

ହେମନ୍ତ ଆସିଛି ପୃଥିବୀକୁ,
ଜରାଜୀର୍ଣ୍ଣ ବୃଦ୍ଧାପରି ନଇଟା ଶୋଇଛି ବାଲିରେ ।
ଚଢ଼େଇ ତୁ ଫେରି ଯା'– ମୋ କଣ୍ଠରୁ ତୋଳି ନେଇ
ବିଷଣ୍ଣ ସ୍ୱରର ସ୍ତବକ ।
ହେମନ୍ତ ଦେଇଛି ବୋଲି ଗୋଧୂଳିରେ ରିକ୍ତ ନୀରବତା,
ଚାରିଆଡ଼ ଶୂନ୍‌ଶାନ୍– ଛାଇ ଛାଇ, ସନ୍ଧ୍ୟା ହେଲେ ବହୁତ କାକର ।

ହେମନ୍ତ ମୋ ମୁହାଁମୁହିଁ,
ପବନରେ ନାହିଁ ଦନ୍ତୁରତା,
ଦୂରେ ଶୁଭେ ଶୀତର ହେଣ୍ଟାଳ,
ସେ ଆମର ନଗ୍ନତାକୁ ଛିନ୍ନ ଭିନ୍ନ କରିଦେବା ପାଇଁ
ନଖ ଆଉ ଦାନ୍ତ ପଜାଉଛି,
ଗର୍ଭିଣୀ ଧାନକ୍ଷେତ ନିମଜ୍ଜିତ କୁହୁଡ଼ିରେ ଆଜି ।

ହେମନ୍ତ ଆସିଛି ପୁଣି
ଟିଲର ଡେଣାରୁ ମ୍ଳାନ ଧୂସରତା ଝରେ,
ଧୂଳି, ଧୂଆଁ, କୁହୁଡ଼ିରେ ବିମର୍ଷ ଚଢ଼େଇ ପରି
ଘାରି ହୋଇ ସନ୍ଧ୍ୟା ଫେରେ ପୃଥିବୀର ଘରେ ।

ନଇପଠା କରେ କରେ
ଅବା କେଉଁ କିଆ ଗୋହିରିରେ,
ହେମନ୍ତ ଶୋଇଛି ଦେଖ,
ମୃତ ଏକ ବଣି ପରି ଘୋଡ଼ି ହୋଇ ଶ୍ରାନ୍ତ ପାଣ୍ଡୁରତା ।

ଚଢ଼େଇ ତୁ ଫେରିଆ,
ଦେଇଯା ରେ ନିଦ ମୋତେ,
ଯା ପାଇଁକି ଝୁରେ ମୋର କ୍ଳାନ୍ତ ଆଖିପତା ।

* * *

# ଅନ୍ଧକାର

ସୂର୍ଯ୍ୟହୀନ ଅନ୍ଧାରରେ ମୁଁ ଯେ,
ହଜିଛି ମୋର ସକଳ ଥଳକୂଳ,
ଚତୁର୍ଦ୍ଦିଗରେ ଅନ୍ଧକାର ରାଜେ,
ଊର୍ଦ୍ଧ୍ୱେ ଅଧେ ଘୋର କାଳିମା ଠୁଳ ।
ହଜିଛି ମୋର ସକଳ ଥଳକୂଳ,
ସୂର୍ଯ୍ୟହୀନ ଅନ୍ଧାରରେ ମୁଁ ଯେ,
ଦିଶୁନି, କାହିଁ ଅଛି ବା ଜ୍ୟୋତି-ଫୁଲ,
ଅନ୍ଧକାର ଧରିଛି ମୋତେ ଭୁଜେ ।
ଚତୁର୍ଦ୍ଦିଗରେ ଅନ୍ଧକାର ରାଜେ,
ବୁଡ଼ିଛି ଏଥି ମୁଁ ଯେ ଆମୂଳଚୂଳ,
ଅଶ୍ରୁତ ଏକ ରାଗିଣୀ ପରି ବାଜେ,
ଅନ୍ଧକାର, ଅନ୍ଧକାର-କୁଳ ।
ଊର୍ଦ୍ଧ୍ୱେ ଅଧେ ଘନ କାଳିମା ଠୁଳ,
ବିଶାଳ ଡେଣା ଅନ୍ଧାରର ବାଜ
ଝାମ୍ପିଛି, ତାର ପ୍ରଖର ନଖରେ,
ଛିନ୍ନ ଭିନ୍ନ ହୃଦୟ-ବର୍ତ୍ତୁଳ ।
ଅନ୍ଧକାର ବାଜର ବିପୁଳ ଡେଣା,
ଅନ୍ଧାରରେ ସୂର୍ଯ୍ୟହୀନ ମୁଁ ଯେ,
ଅନ୍ଧକାର ଧରିଛି ମୋତେ ଭୁଜେ,
ଅନ୍ଧକାର ବିରାଜେ ଚଉଦିଗେ,
ଅନ୍ଧକାର ଊର୍ଦ୍ଧ୍ୱେ ଅଧେ ଠୁଳ,
ଅନ୍ଧକାର, ଅନ୍ଧକାର-କୁଳ ।

# ନିର୍ଜନତା ଓ ମୁଁ

ମୁଁ ନିଜର ଛାଇର ଶରୀରକୁ ଗୋଡ଼ରେ ଦଳି ଦଳି ଚାଲିଥାଏ,
ଆଉ ଚାଲିଥାନ୍ତି ମୋତେ ବେଢ଼ି ନାନା ଆକାରର ଛାଇ।
ସରୁ ମୋଟା, ଅଥବା ଚେପ୍ଟା।
ଚାରିଆଡୁ ଟୋପା ଟୋପା ଅନ୍ଧାର ସନ୍ତରଥାଏ,
ତରଳ, କାଦୁଆ-କାଦୁଆ ଅନ୍ଧକାର।

ପବନର ହଠକାରିତାରେ ବିପର୍ଯ୍ୟସ୍ତ ଚନ୍ଦ୍ର ଶେଷକୁ
ଉଇଁଲା, କିନ୍ତୁ ତଥାପି, ମେଘମାନେ ତାକୁ ଧରି ଖେଳୁଥାନ୍ତି,
ଗିଳିଦେଇ ପୁଣି କରୁଥାନ୍ତି ବାନ୍ତି।
ଆଉ ଅରଣ୍ୟର ଚଟାଣରେ ଗଛର ଫାଙ୍କ ବାଟେ
ମୁଠାଏ କାଚଭଳି ଭାଙ୍ଗି ବୁଣିଗଲା ଜୋଛନାର ଶିଶିଟା।

ଏହି ନିର୍ଜନ-ନିସ୍ତବ୍ଧ ଜଙ୍ଗଲରେ
ନୀରବତାର କଣ୍ଠ ଚିରି ମୋତେ କିଏ ଯେମିତି
ପ୍ରଶ୍ନ କଲା, 'ତୁମେ କିଏ ? କାହାର ଦାୟାଦ ?'
ଏତିକିବେଳେ ଚାରିଆଡୁ ହାହାକାର କରି ଦୌଡ଼ିଆସିଲେ
ଦଳ ଦଳ ପବନ।
ଗଛର ଅବାଧ ଚୁଟି ଧରି
ଝିଙ୍କୁଥାନ୍ତି ଦୁଷ୍ଟ ଆନନ୍ଦରେ ସେମାନେ।

ସେହି ପିଚ୍ଛିଳ ଅନ୍ଧାର, ଅରଣ୍ୟ ପ୍ରାନ୍ତର, ଆଉ ଦସ୍ୟୁ ପବନ,
ସମସ୍ତେ ମୋତେ ଘେରି ପକାଇଲେ।

ତିର୍ଯ୍ୟକ୍ କଣ୍ଠରେ ପଚାରିଲେ, ମୁଁ କ'ଣ ଚନ୍ଦ୍ରାହତ ?
ନା, ଜହ୍ନର ମାଦକତା ତେତେ କାବୁ କରୁନାହିଁ ମୋତେ
କିମ୍ବା, ମୁଁ ସବୁ ଯୌନତାର ଊର୍ଦ୍ଧ୍ୱରେ ଏକ ନିର୍ବାତ ନିଷ୍କମ୍ପ ଶିଖା ?
ମୋର ମନ ହେଲା, ମୁଁ ଯେମିତି
ଗୋଟାଏ ତିମିମାଛର ବିରାଟ ଉଦର ଭିତରେ ପଶିଯାଏ,
ସାତତାଳ ଅନ୍ଧାରରେ ହୁଏ ନିମଜ୍ଜିତ,
ବିବରହୀନ, ନିରନ୍ଧ୍ର ନୀରବତା ଭିତରେ ଯାଇ ଆଶ୍ରୟ ନିଏ !
ସେଠି ଛାଇଙ୍କର ଭିଡ଼ ନାହିଁ,
ନାହିଁ ତାଙ୍କର କଣ୍ଠହୀନ ଚିତ୍କାର,
କିଏ ? କ'ଣ ? କାହିଁକି ? କେବେ ? କେଉଁଠି ?
କ୍ରମେ ମୁଁ ଏକ ଐଶ୍ୱରିକ ସମାଧିରେ ହେବି ନିର୍ବିକଳ୍ପ,
ଅନ୍ଧାରର ପାତାଳରେ ଖୋଜିବି ଅବଲୁପ୍ତିର ସୋପାନ ।

* * *

# ହୁଏତ

କୁକୁରଗୁଡ଼ାକ ଠିକ୍ ସେହି ମୁହୂର୍ତ୍ତରେ
ଚନ୍ଦ୍ରର ଦେହକୁ ଛିନ୍ନ ଭିନ୍ନ କରି
କାଟି ପକାଇଲେ ଦାନ୍ତରେ ।
ବୁଢ଼ା ବରଗଛର ଗୋଇଠି ପାଖରେ ଇତସ୍ତତଃ
ବିକ୍ଷିପ୍ତ ତାର ଶବ । ତା'ପରେ ଏକ ଅଦୃଶ୍ୟ ନିଶୁଣିବାଟେ କେତେବେଳେ
ସେଇ ଚନ୍ଦ୍ର ଯାଇ ପୁଣି ବରଗଛର
ମଥାନ ଉପରେ ପହଞ୍ଚିଛି । ସାରାରାତି
ଧରି କୁକୁରମାନେ ଊର୍ଦ୍ଧ୍ୱଗ୍ରୀବ, ତାକୁ ଚାହିଁ ରହିଛନ୍ତି । ହାତିଦାନ୍ତରେ
ଗଢ଼ା ମୁହଁକୁ ଦେଖି ହତାଶ ଚିତ୍କାରରେ ଜୋଛନାକୁ ଫାଳ ଫାଳ
କରି ଚିରିଛନ୍ତି ସେମାନେ ।

ମୁଁ ସେତେବେଳେ ସ୍ନାତ ପର୍ଯ୍ୟାପ୍ତ କୌମୁଦୀରେ । ମୋ
ଦେହରୁ ଏକ ମୃଦୁ ଉଷ୍ମତା କ୍ରମେ ଉତ୍ସାରିତ ।
ଯେମିତି ଏକ ଯୁବତୀ-ଛାତି
ଭିତରୁ କୋମଳ ଅନୁରାଗ ନିଃସୃତ ହୋଇ ମିଶୁଛି ସ୍ୱର୍ଗର ପରିଧିରେ ।
ମୟୂରପୁଚ୍ଛର ପେଲବ ସ୍ପର୍ଶରେ ସମଗ୍ର ଅନ୍ତରୀକ୍ଷ ଆପ୍ଳୁତ । ମୋ
ଶରୀରରେ ସ୍ନାୟୁମାନଙ୍କର କଳରବ ଶାନ୍ତ । କେଉଁ ଦୂର ଦ୍ୱୀପରୁ
ପୁଞ୍ଜ ପୁଞ୍ଜ ପ୍ରାର୍ଥନା ଆସି ମୋ ପାଖରେ ନିବେଦିତ ହେଉଛି ।
ହଠାତ୍ ଚଢ଼େଇପଲ ଡେଣାର ବିଧୂନନରେ ସେ କଥା ଘୋଷୁଛନ୍ତି ।

କିଂଶୁକର ହୃଦୟକୁ କୀଟମାନେ କୋରି କୋରି ପ୍ରେମରେ
ନା ଘୃଣାରେ କାଟନ୍ତି ? ଦୁର୍ଦ୍ଧର୍ଷ ପବନରେ ଦାରୁଚିନି ବନର ସୌରଭ ।
ହୁଏତ ତୁମେ ଏତେବେଳେ ପ୍ରେମ, ଗ୍ଲାନି, ହିଂସା, ଭୟ, ଦ୍ୱିଧା,
ଶୋଣିତ, ଲଜ୍ଜା ଆଉ ସ୍ତବ୍ଧତାର ଅଲଙ୍ଘ୍ୟତା ଉତ୍ତୀର୍ଣ୍ଣ ହୋଇ
ଦୁସ୍ତର ଏ ବ୍ୟବଧାନ ଦୂର କରିବ !

* * *

# ମିନତି

ତୁମେ ମୋତେ ଛୁଅଁ ନାହିଁ,
ତୁମର ସେ ନରମ ନଖରେ,
ଛୁଅଁ ନାହିଁ ମୋତେ ସଖୀ ଥରେ !

ତୁମେ କ'ଣ ଜାଣ ନାହିଁ
ନଖରେ ତୁମର ରହିଛି ତଡ଼ିତ,
ସ୍ପର୍ଶରେ ମୁଁ ହଜାଏ ସମ୍ବିତ ?

ଜାଣିନ କି ମୋ ହାତରେ ଦେଲେ ହାତ,
ଦେହରେ ମୋ ନିଶ୍ଚିତ ବିସ୍ଫୋରଣ,
ଅଚାନକ ଭୂମିକମ୍ପ ଘଟେ,
ଶୋଣିତକଣିକା ସବୁ ମୁହଁ ଆଉ ହୃଦୟକୁ
ପ୍ରଶସ୍ତ ପଡ଼ିଆ ଭାବି ଦୌଡନ୍ତି ସେ ଉଭୟ ପଟେ ?

କିମ୍ବା ଅସେ ଟାଇଫୁନ୍ ମାଡ଼ି,
ବୁଦ୍ଧିର ଛାତ ଉଡ଼ି
ରକ୍ତ-ମେଦ ଦୋହଲାଇ,
ସ୍ନାୟୁମୂଳ ନିଅଇ ଓପାଡ଼ି ?

ମୋ ଆଖିରେ ଆଖି ରଖ ନାହିଁ
ଆଖିରେ ତୁମର ବିଷ,
ଚେତନାକୁ ଘାରଇ ନିଃଶ୍ୱାସ
ମୋ ଓଠରେ ରଖ ନାହିଁ ଓଠ,
ଓଠ ମୋର ଯିବ ପୋଡ଼ି,
ଛାତିରେ ସହସ୍ର ହାତୁଡ଼ି,
ପିଟୁଥିବ କିଏ ଠୋ ଠୋ ?

ଖାଲି ତୁମେ ଆସ ରାତି ହେଲେ,
ଜହ୍ନ ଆଉ ତାରାର ତିମିରେ
ଖୋଜି ଖୋଜି ବାଟ,
ଶୁଣି ଶୁଣି ମନର କୁହାଟ,
ହୃଦୟର ନିର୍ବାକ ଗଳିରେ
ନିଃଶବ୍ଦ ବିଲେଇ ପରି
ଆସ ତୁମେ, ରାତି ବେଶି ହେଲେ ।

* * *

# ଶୀତ

ଏଥର ଆସିଛି କାଳ ପରିପୂର୍ଣ୍ଣ ଜରା ଓ ମୃତ୍ୟୁର,
ଏଥର ଆସିଛି ଋତୁ ଲୋଳଚର୍ମା ବୁଢ଼ୀମାନଙ୍କର
କତରା କାଖେଇ କୋଳେ, ଈଷଦ୍ ଉଷତା ପାଇଁ
ଉମ୍‌ହେଇରେ ସ୍ୱରଗ ଖୋଜିବା ।

ପବନ ପନିକି ଧରି କେଳଉଛି ରାତିର ଦେହକୁ,
ଏ ବର୍ଷ କେତେ ବୁଢ଼ା ଯିବେ ଚାଲି ଅପର ପୁରକୁ,
ପାକୁ ପାକୁ ପାଟି କରି ସେ ହିସାବ ସେମାନେ କରନ୍ତି,
ଆମ ଗାଁ ବୁଢ଼ାକୁଳ, ଦନ୍ତହୀନ ମାଢ଼ୀ ଖାଲି ହଲେ,
ପାହାଡ଼ର ଶିଖ ପରି ଦୁଇପଟେ ଜାଗରିତ ହନୁ ।

ଏ ବର୍ଷ ଭାରି ଶୀତ,
ଛପି ଛପି ଶୀତଋତୁ କେତେବେଳେ ପଶିଛି ଗାଁରେ !
ନିଶ୍ଚଳ ଆମ୍ୱତୋଟା, ଖରାର ଉଷୁମ ଟାଣେ
ଡାଳ ଅଗେ ଘୁମୁରେ କପୋତ ।

ନଈ ଆଜି ଖାଲି ବାଲି,
ଦିଗ୍‌ବଳୟ ଢାଙ୍କିଛି କୁହେଳି,
ଦୂରର ପାହାଡ ସବୁ ଧୂସର ସ୍ୱପନ ଭଳି,
କୁହୁଡ଼ିରେ ମ୍ଳାନ ।
ବେଳ ଗତ ହେଲେ ପୁଣି ଘୋଟିଆସେ ପାଣ୍ଡୁର ରଜନୀ,
ସୂର୍ଯ୍ୟଟା ମରିଯାଏ ଝଟ କରି, ନିଜ ରକ୍ତେ ଖୋଳୁ ଖୋଳୁ ହୋଇ,
ନିଷ୍ଠୁର ବ୍ୟାଧ ପରି ଲୁଚି ଲୁଚି ରାତିର ଉହାଡେ,
ଶୀତଆସେ ଦୁର୍ନିବାର, ଅନ୍ଧାରର ଦେହରେ ବିହରି ।

ସେ ଆସିଛି ଦେଖିବାକୁ ଜରତୀଙ୍କ ଏ ଯେଉଁ ଯନ୍ତ୍ରଣା,
ଏଥର ଆସିଛି ଶୀତ ମାସର ଏ ଅସହ୍ୟ ତୁହିନ,
ଏଥର ଆସିଛି ଦିନ ନିର୍ମଳ ଅବକ୍ଷୟତାର,
ଏଥର ଆସିଛି ରାତି କରିବାକୁ ଘୋର ଉତ୍ପୀଡ଼ନ ।

* * *

# ପ୍ରାର୍ଥନା

ହେ ଈଶ୍ୱର,
ଦିଅ ମୋତେ ଜ୍ୱର,
କର ମତେ ପ୍ରଳାପ-ପୀଡ଼ିତ,
ଦଗ୍ଧ କର,
ମ୍ଳାନ, ପାଣ୍ଡୁ, ପୀତ
ହେଉ ମୋର ଏ ମୁଖମଣ୍ଡଳ ।

ପଡ଼ିବି ମୁଁ ହୋଇ ଲୟହାଲ
ବିଛଣାରେ,
ଯେମିତି ତାଳର ଛାଇ
କ୍ଳାନ୍ତ ହୋଇ ଶୋଇପଡେ
ରୌଦ୍ରଦଗ୍ଧ ପ୍ରାନ୍ତର ସୀମାରେ ।

ହେ ଈଶ୍ୱର ଦିଅ ମୋତେ ବ୍ୟାଧି,
ଚଞ୍ଚଳତା, ଉଚ୍ଛଳତା, ଏସବୁର ସଂଘଟୁ ସମାଧି ।
ଶୋଇ ଶୋଇ ମୁଁ ଦେଖିବି ଆକାଶର କ୍ଷଣିକ ଚନ୍ଦ୍ରେଇ,
କିମ୍ବା କେଉଁ ପଳାତକ ମେଘ,
ପୋଖରୀରେ ହାମୁଡେଇ
ମୁହଁ ଦେଖେ ହୋଇ ରୁଦ୍ଧାବେଗ ।

ଜ୍ୱାଳା ଦିଅ, ଯନ୍ତ୍ରଣା ବି ଦିଅ,
ହାଡ଼େ ହାଡ଼େ ଢାଳିଦିଅ ଶୀତ,
ପରିପକ୍ୱ ବିଷାଦରେ ଭୀତ
ତ୍ରସ୍ତ ହୋଇ ସେ ଆସିବ,
ପଚାରିବ, 'କାହିଁକି ଡାକିନ,
ବୁଝ ନାହିଁ ହିତ ନା ଅହିତ ?''
ଅଭିମାନେ ଓଠ ତାର କରୁଥିବ ସ୍ଫୀତ ।

ହେ ଈଶ୍ୱର
ମୋ ଦେହରେ
ଭରିଦିଅ ସହସ୍ର ନିଦାଘ,
ଥରକ ପାଇଁ ସେ ଆସୁ ନିକଟକୁ,
ଅନ୍ତତଃ ଥରକ,
ବୁଡା ମାହାଳର ତାଳେ ଘୁମୁରଇ ନିଃସଙ୍ଗ କପୋତ,
ସେ ବୋଧେ ମୋରି ପରି ଝୁରୁଥିଛି,
ଛାତିପାଖେ ପାଇବାକୁ ପରିଚିତ କେଶର ମହକ ।

୦ ୦ ୦

# ଜୀବନ

ଏ ଜୀବନ ଭଲ ପାଇବାକୁ,
ହାତ ରଖି ହାତ ପାପୁଲିରେ
ଯୁଗ ଯୁଗ ବିତାଇ ଦେବାକୁ,
ସନ୍ଧ୍ୟାର ସ୍ତବ୍ଧତାରେ ମେଲିବାକୁ ମନର ପାଖୁଡ଼ା,
ତୁମ କଥା ଭାବି ଭାବି ନିତି ନିତି ଘରକୁ ବାହୁଡ଼ା ।
ତୁମର ଆଖିର ଭାଷା ପଢ଼ିବାକୁ ଏ ଜନ୍ମ ମୋହର,
ତୁମ ଛାତି ସ୍ପନ୍ଦନକୁ ଗଣି ଗଣି,
ମାନେ ଖୋଜି ହଠାତ୍ କୋହର
ଅପାର ଆନନ୍ଦ ମିଳେ, ହୃଦୟରେ ଅସୀମ ଆରାମ ।

କେଶର ଅରଣ୍ୟେ ଯଦି
ଆଙ୍ଗୁଠି ମୋ ବାଟ ତା ହଜାଏ,
ଓଠରେ ସଞ୍ଚରିଯାଏ ଦାରୁଣ ଦଗ୍ଧତା,
ସେତେବେଳେ ବୁଝିପାରେ ସାଗରରେ କାହିଁକି ମଉତା;
ଢେଉମାନେ ପରସ୍ପରେ କାହିଁକି ବା ଧରନ୍ତି ଜାବୁଡ଼ି ।

ଏ ଜୀବନେ କେତେ ବର୍ଣ୍ଣ, କେତେ ଧ୍ୱନି, ସୁନ୍ଦର ମହକ,
ମେଘରେ ମେଘରେ ପୁଣି କେତେ ଛବି, ଭାବର ଦ୍ୟୋତନା,
ଏସବୁର ସୃଷ୍ଟି ଖାଲି ମୁଁ ତୁମକୁ ଭଲ ପାଏ ବୋଲି,
ଏ ଜୀବନେ ଯେତେ ଆଶା, ଅପଯଶ, ଯେତେକ ବଞ୍ଚନା !

ଅସ୍ତଗାମୀ ସୂର୍ଯ୍ୟର ରୁଧିରାକ୍ତ ବିକଟ ତିମିରେ,
ସନ୍ଦେହର କରତରେ କଟି କଟି ଭାବେ ପୁଣି ମନ,
ଏ ଜୀବନ ନିଦାରୁଣ ଯନ୍ତ୍ରଣାରେ ବିଦ୍ଧ ହେବା ପାଇଁ,
ଶୂଳପକ୍ୱ ମାଂସଭଳି ସିଝିବାକୁ ନିଭିଲା ରଡ଼ରେ ।

...

# ବର୍ଷା

ଏବଂ
ଝରୁଛି ବର୍ଷାର ଧାରା,
ଦେବଦାରୁ, ଶାଳ-ପିଆଶାଳର ମୁଣ୍ଡରେ,
ପାହାଡ଼ର କାନ୍ଧରେ, ଆଉ ଚରୁଥିବା ଗାଈମାନଙ୍କର ପିଠି
ଦେଇ ମାଟି ଉପରେ ପଡ଼ୁଛି କଛାଡି ।

ଏ ସେହି ବର୍ଷା ଯେ ଦିନେ ମହେଞ୍ଜୋଦାରୋ ଅଥବା ହରପ୍ପାର
ସନ୍ଧ୍ୟାକୁ ଆହୁରି ବିଧୁର କରିଥିଲା ।

ଏ ସେହି ବର୍ଷା, ଯେ ମୋର ମନକୁ ଭରିଦେଇଛି
ବ୍ୟାକୁଳ ପ୍ରଗଲ୍‌ଭତାରେ ।
ମୁଁ ଭଲ ପାଏ ବର୍ଷାକୁ
ତାର ବିରାମହୀନ କୀର୍ତ୍ତନକୁ ।
ଶୀତର ନିରକ୍ତ ଦୈନ୍ୟ ମୋତେ ଭଲ ଲାଗେନା ।
ଗ୍ରୀଷ୍ମର ନିଦାଘରେ ଦଗ୍ଧ ହେବା ଏକ ଗ୍ଲାନି ।
ମୁଁ କେବଳ ବର୍ଷାକୁ ଭଲ ପାଇଛି ।
ଯଦିଓ ବର୍ଷା ଭସାଇ ଦିଏ ମୋର ଅତୀତ,
ବର୍ତ୍ତମାନ ଆଉ ଭବିଷ୍ୟତ ବି ଝାପ୍‌ସା,
ତଥାପି ବର୍ଷାର ଆକାଶରେ,
କଳା ମେଘର ସମୁଦ୍ର ମଝିରେ,
ତୁମର ସଜଳ ଦୁଇଟି ଆଖି ଦ୍ୱୀପ ପରି ଜାଗିଉଠେ,
ମୁହଁ ତୁମର କ୍ରମଶଃ ବ୍ୟାପ୍ତ ହୁଏ ବର୍ଷାରେ,

ପବନରେ; ସମଗ୍ର ଆକାଶରେ ।
ସୁପ୍ତ ଗଛର ସୁଖୀ ପତରରେ ବିରହ ତୁମର
ବେଦନା ପରି ଝରେ ।

ମୁଁ ଆଜି କେଉଁଠିକି ଯିବିନାହିଁ,
ଗେହ୍ଲେଇ ବିଲେଇ ପରି ତୁମ ସ୍ମୃତିକୁ ଢାକିଢୁକି
ଉଷୁମ ଖୋଜିବି ।
ଆଉ ଭାବିବି ତୁମ କଥା,
ଯା ମୋର ହୃଦୟର ଅଗଣାରେ
ବାହାରର ବର୍ଷା ପରି ଅବିରତ
ଅଜାଡ଼ି ହୋଇ ପଡୁଛି ।

* * *

# ଅନ୍ଧକାରର ସ୍ତବ

ପୃଥିବୀଟା ବଡ଼ ଶୂନ୍‌ଶାନ୍
ଆଉ ନିର୍ଜୀବ ଲାଗୁଥିଲା ।
ମାଛରଙ୍କା ରଙ୍ଗର ଖରାର ଚିହ୍ନବର୍ଣ୍ଣ ନ ଥିଲା ବିଲକୁଲ ।
ପଳାତକ ପବନର ଠିକଣା ବି ଯାଇଥିଲା ହଜି ।

ଏଥର ଅନ୍ଧାରର ସମୁଦ୍ରରେ ଯାତ୍ରା,
ସାତତାଳ ଅନ୍ଧାରର ଅକାତ ଗହ୍ୱରେ,
ମଙ୍ଗ ଧରିବାକୁ ହେବ ।

ଲଣ୍ଠନର ଶିଖାଟା ମାତାଲ ପରି ଟଳୁଛି ଅବିରତ,
ଦଦରା ନାଆର କଣାବାଟେ
ନିଃଶବ୍ଦରେ ଆସି ଜମୁଛି ବିଭୀଷଣ ପାଣିର ସ୍ରୋତ,
ସେମାନଙ୍କର ଗୋପନ ମନ୍ତ୍ରଣାର ଧ୍ୱନି ଶୁଭୁଛି,
ଏଥର କ୍ରୂର, କପଟ ଅନ୍ଧାରରେ
ଅଝାଲ ମେଲିଛି ।
କାହିଁ ସେ ବନ୍ଦର
ଯେଉଁଠି ମଣିଷଗୁଡ଼ାକ କୁକୁର ପରି ବଶଂବଦ ?

ସୂର୍ଯ୍ୟ ତାର କିରଣର ଜାଲ ଗୁରେଇ ନେଇଛି,
ମୋର ଅତୀତ ନାହିଁ,
ଅତୀତ ଅର୍ଥ ମୃତ୍ୟୁ,
ସ୍ମୃତିର କବର ଖୋଳିବା ପଣ୍ଡଶ୍ରମ ।
ତୁମେ ଏତେବେଳେ ଆସି
ନାଆ ଦାଢ଼ରେ ବସି,
ପାଣିରେ ଗୋଡ଼ ବୁଡ଼େଇ ବୁଡ଼େଇ ଖେଳିବ ।
ଈଶ୍ୱର ଭଳି ଅନାବଶ୍ୟକ ଆହ୍ଲାଦଟା
ମୁଁ ଫିଙ୍ଗିଦେବି ପାଣିକୁ
ତୁମେ ମୋର ହାତ ଧରିବ,
ହୁଏତ ସେତେବେଳେ ବହୁତ
ଡେରି ହୋଇଗଲାଣି !

* * *

# ସୂର୍ଯ୍ୟ

ସୂର୍ଯ୍ୟ ତୁମେ ପ୍ରଭୁ,
ଅଟ ତୁମେ ପ୍ରତିଭୂ
ବୀର୍ଯ୍ୟ,ଶୌର୍ଯ୍ୟ, ଦ୍ୟୁତିମୟତାର ।

ସୂର୍ଯ୍ୟ ତୁମେ ଜନ୍ମ ନିଅ
ସମୁଦ୍ରର ସବୁଜ ଜଠରୁ,
(ଯେତେବେଳେ ଆକାଶଟା ବିଶେ
ଠିକ୍ ବେବୁନ ନିତମ୍ବ)
ଯୋଜନ ଯୋଜନ ବ୍ୟୋମ,
ସେଠି ଯେଉଁ ରଜତର ଖମ୍ବ,
ତାକୁ ଧରି ଚଢ଼ି ଚଢ଼ି,
ସର୍କସର ବିଦୂଷକ ପରି,
କେତେବେଳେ ପେଲିଦେଇ
ଅଦୃଶ୍ୟ ନିଶୁଣି,
ଗଡ଼ି ଗଡ଼ି ଆକାଶର ମଝିରେ ହାଜର ।

ସୂର୍ଯ୍ୟ ତୁମେ ଦେବତା ମୋହର,
ଦିଅ ତାପ, ଦିଅ ଦୀପ୍ତି,
ନିଆଁ ଜାଳି ଶୁଦ୍ଧ କର ଶୋଣିତ ଦେହର ।

କେତେବେଳେ ତୁମେ ପୁଣି
ସ୍ୱର୍ଗର ହୁଅ ଝାଡୁଦାର,
ଆକାଶର ଅଗଣାଟା ଝାଡ଼ି ଝାଡ଼ି
ହୁଅ ଆଗୁସାର ।

ସୂର୍ଯ୍ୟ ତୁମେ ନିର୍ମମ ନିଷ୍ଠୁର,
ଖରାର ଚାବୁକରେ
ପୃଥିବୀର ଦେହକୁ ପ୍ରହାର,
ଲେଲିହାନ ଜିଭ ଦେଇ
ସବୁ ପାଣି ଶୋଷି ନେଇପାର ।

ତୁମେ ଜାଣ ହଜାର ଭେଲିକି,
ପ୍ରବେଶିଲେ ଶୀତ ଋତୁ
ପୃଥିବୀଟା ଯେତେବେଳେ ଦୁଃଖୀ,
ପବନର କୁତୁ କୁତୁ ଗଛଦେହୁ
ପତର ଖସାଏ ।
ପାଣିସୁଅ ହଠାତ୍ ଥମକି
ପାଲଟେ ବରଫ ।
ସେତେବେଳେ ତୁମେ ଢାଳ
ପ୍ରେୟସୀର ଉଷ୍ଣ ଚୁମା ପରି,
ଅନ୍ତହୀନ କିରଣର ସ୍ରୋତ ।

ପ୍ରତି ପ୍ରତ୍ୟୁଷରେ ତୁମେ
ସ୍କୁଲପିଲା ପରି,
କାଖରେ ବହି ଧରି
ଦିଗନ୍ତରେ ନିଶ୍ଚିତ ହାଜର ।
ଦିଅ ଖରା, ଦିଅ ଦ୍ୟୁତି,
ଦିଅ ଛାଇ, ଦେବତା ମୋହର,
ସାତଘୋଡ଼ା ସବାର ହେ,
ଜ୍ୟୋତିର୍ମୟ କରୁଣାବତାର ।

* * *

# ସ୍ୱଗତ

ଆମେ ଦୁହେଁ ଝୁଲୁଅଛୁ ହ୍ୟାଙ୍ଗାରରେ ସାର୍ଟ ଭଳି,
ଆଲମାରିର ଶୂନ୍ୟ କନ୍ଦରରେ ।
ପାଖାପାଖି, ଖୁବ୍ ପାଖାପାଖି,
ଆମେ ଦୁହେଁ ଲୟମାନ ଦୋଳାୟିତ ପିଚ୍ଛିଳ ଅନ୍ଧାରେ,
ଫେରିହୁଏ ନାହିଁ ପରା ହୃତବୀର୍ଯ୍ୟ ପାଚିଲା ବାଳରେ ?
ଅସରନ୍ତି ଖାଲ ଢିପ ପାରିହୋଇ ତେମୁହାଁଣି ଛକେ ?

ଆସ ଯିବା ଗୋଧୂଳିରେ ପରସ୍ପର ହାତ ଧରାଧରି,
ଖୁବ୍ ଧୀରେ କଥା କୁହ କୋଇଲିଟା ଯଦି ଯାଏ ଉଡ଼ି,
ବୃକ୍ଷରୁ ବୃକ୍ଷାନ୍ତରେ ଆମର ଶୈଶବ ଭଳି ତୁଚ୍ଛାଟାରେ
ନିହାତି ଛନକା,
ବର୍ତ୍ତମାନ ଶରୀରରେ ପ୍ରବେଶିଛି କେତେ ମେଦ, ଧୈର୍ଯ୍ୟ, ପୁଣି ଭୟ,
ବର୍ତ୍ତମାନ ଶରୀରରେ କେତେ କ୍ଲେଦ, ଘର୍ମ ଆଉ କ୍ଷୟ,
ଓଜନ ବଢ଼ିଛି ଢେର, ଆସିଅଛି ଫେରି ଶୀତଋତୁ ।
ଆଜିକାଲି ଖାଲିଟାରେ ବସି ରହି ସମୁଦ୍ରବାଲିରେ
ଢେଉ ଗଣିବାକୁ ଇଚ୍ଛା ହୁଏ,
କିନ୍ତୁ ଦିନେ ଅକାତ ସମୁଦ୍ର ଦେଖି,
ଅବଗାହିଥିଲି ଜାଣି ଜାଣି,
ସମୁଦ୍ରରେ କହ ଭଲା କେତେ ଘନଫୁଟ ଲୁଣିପାଣି ?
କେତେ ତିମି, ଶାକୁଚ, ମଗର ବା ଶିଶୁମାର ଅଛି ?

ଏ ସମୟେ କେହି ଯଦି ସମୁଦ୍ରର ଅନ୍ତଃସ୍ଥଳ ଚିରି,
ଶାଳପ୍ରାଂଶୁ ମହାଭୁଜ ଆନ୍ଦୋଳିତ କରି ଉଠିଆସେ,
ସାଗରର ଢେଉ ସବୁ ରୁଦ୍ଧସ୍ରୋତ, ଅତଳ ସରସୀ।
କିଏ ସେ ପୁରୁଷ ଏକ ଜଳଦମନ୍ଦ୍ର କଣ୍ଠେ ଚରାଚର
ସହସା ବିଦାରି, ପ୍ରଶ୍ନ କଲା ଅକସ୍ମାତ୍,
''ମୁଁ ତୁମର ଶୈଶବକୁ ଫେରାଇ ଦେବାକୁ ଆସିଅଛି,
ନେବ କି ନ ନେବ ? ଠିଆହୁଅ ହୋଇ କୃତାଞ୍ଜଳି,
ଯାଦୁକର ମୁହିଁ ଯେ ଅଟଇ।

ସେତେବେଳେ ଆକାଶରେ ଲାଲି ମଦ ଢାଳି ହୋଇଗଲା,
ଚରାଚରେ ଶୁଭିଗଲା ନିନାଦ ଯେ ସହସ୍ର ଦୁନ୍ଦୁଭି,
ଗନ୍ଧର୍ବ-କିନ୍ନରଗଣ ଆକାଶରୁ ପୁଷ୍ପବୃଷ୍ଟି କଲେ,
ଢେଉ ସବୁ ମସ୍ତକରେ ଆଚ୍ଛାଦିଲେ ସେ ଶ୍ୱେତ ସୁରଭି,
ନାଚି ନାଚି ବେଢ଼ିଗଲେ ମୋ ଦେହକୁ ଅସ୍ଥିର ଦଂଶନେ,
ତୁମକୁ ଖୋଜିଲି ମୁହିଁ ଚଉକତି ଅଣ୍ଡାଳି ଅଣ୍ଡାଳି,
ତୁମେ କ'ଣ ମାଛ ହୋଇଗଲ, ସୁନାକାତି, ରୂପାକାତି
ମତ୍ସ୍ୟଗନ୍ଧା ଅଚିହ୍ନା କୁମାରୀ ?
ଢେଉମାନେ ଛୁଇଁଗଲେ ସ୍ନାୟୁ, ଶିରା, ମୋ ନାଭିକୁଣ୍ଡଳୀ।
ସେମାନେ ଯେ ଆସିଛନ୍ତି ମୋ ଦେହରେ ଦେବାକୁ ଉତ୍ତାପ,
ମୁଁ ପାଇବି ତୀରଭୂମି, ଦୃପ୍ତ ପଦେ ଥରାଇ ମେଦିନୀ
ଚାଲିବି ଯୋଜନ ପଥ ଅନୁକରି ବୀର ସିଂହ-ଠାଣି।

ଆମେ ଦୁହେଁ ହ୍ୟାଙ୍ଗାରରେ ଝୁଲୁଅଛୁ ତ୍ରିଶଙ୍କୁର ପରି,
କିମ୍ବା ଦୁଇ ପାଳଭୂତ ଜଗୁଅଛୁ ଏକ ମକାବାରି।
ଏ କେଉଁ ବିମୂର୍ତ୍ତ ସତ୍ତା ବିଧ୍ୱସ୍ତ ଶିରାରେ

ଜୀବନର ଢେଉ ଫେରିବନି ?
ଲୋଳିତ କୁଣ୍ଡିତ ଚର୍ମ ଆବୋରିବ ଶ୍ଳଥ ପରିଚ୍ଛଦ
ଜ୍ୟୋତ୍ସ୍ନାହତ ନିଭୃତ ଅନ୍ଧାରେ ?

ମୁଁ ଯଦି ଖୋଜିବି ଆଜି ଜାନୁଦ୍ୱୟ ଅବଶ୍ୟ ପୂରିଲା,
ଛାଲର ନିର୍ମୋକ ଫିଙ୍ଗି, ତୀର ଖଞ୍ଜି ଦେହର କାର୍ମୁକେ,
ତୁମେ ଦେବ ଆଣି ମୋତେ ଅହଙ୍କାର, ଚୈତନ୍ୟ ପ୍ରଭୃତି ?

ଆଶ୍ଚର୍ଯ୍ୟ ସାଗରରେ ଦ୍ୱୀପର ଉଦୟ ହେବ ଏକ,
ଅତଳାନ୍ତ ନୀଳ ଜଳ ଚଉଦିଗେ ବେଢ଼ିଥିବେ ତାକୁ,
ସୁନେଲୀ ମାଛମାନେ ଖେଳୁଥିବେ ପହଁରି ପହଁରି,
ପଦ୍ମଫୁଲ, ଜ୍ୟୋତ୍ସ୍ନା, ଶାନ୍ତି, ପ୍ରେମ ଆଉ ନୀଳକଣ୍ଠ ପକ୍ଷୀ,
ବିପନ୍ନ ଅନ୍ଧାର ଭେଦି ତାରାତେଜେ ହସିବ ଅବନୀ ।

ଚାରିଆଡ଼େ ଅଗ୍ନ୍ୟୁତ୍ପାତ ଦ୍ୱୀପ ସବୁ ମୁହୁର୍ମୁହୁ ଥରେ,
ପ୍ରଳୟ ସମୁଦ୍ରଜଳେ ଗର୍ଜୁଅଛି ସହସ୍ର ବାସୁକୀ,
ବର୍ତ୍ତମାନ ମୋ ଦେହରେ ଲାଭାସ୍ରୋତ ଗଡ଼ି ହୋଇଗଲା,
କେଉଁଠାରୁ ଜଡ଼ପିଣ୍ଡ ଓ ହୃଦୟ କେ କରେ ସୁମାରି ?
ଅଙ୍ଗାର, ଧାତୁସ୍ରାବ, ପଶୁହାଡ଼, କିମ୍ବା ପାଉଁଶରେ
ପୋତି ହୋଇ ସ୍ମୃତି ଭଳି ଇତିହାସ ସୁମରି ସୁମରି ।

ଯୋଜନ ଯୋଜନ ବର୍ଷ ପାଖାପାଖି ହ୍ୟାଙ୍ଗାରରେ
ଆମେ ଦୁହେଁ ଝୁଲୁଅଛୁ, କ୍ଷୁରଧାର ପବନରେ ଚିରି,
ଦ୍ରୁତ ସୁଖ, ବିସ୍ରସ୍ତ ସରଣୀ ।

# ବାରଟା ରାତି ପରେ

ରାତି ଟିକେ ବେଶି ହେଲେ ସବୁ ଘଡ଼ି ବାରଟା ବଜାନ୍ତି,
ସବୁ ନଦୀ ସମୁଦ୍ରେ ପଡ଼ନ୍ତି ।
ଛାଇମାନେ ମରିଗଲେ,
ପାଳଭୂତ, ପେଚା ବା ବାଦୁଡ଼ି,
ବିସ୍ତୀର୍ଣ୍ଣ ବିଷାଦରେ ନିଜକୁ ଦେବାଳିଆ ଭାବି,
ଶୀତାର୍ଦ୍ର ପବନରେ ବଶଂବଦ ଶରୀରକୁ ମେଲି,
ପ୍ରଚଣ୍ଡ ଶବ୍ଦ କରି ହାତତାଳି ଦିଅନ୍ତି ଅବିରତ ।

ରାତି ଟିକେ ବେଶି ହେଲେ ଯାଯାବର ଏ ଯେଉଁ ସାଗର,
ଢେଉର ପାପୁଲିରେ କାମନାର ବିଚିତ୍ର ଗୁହାରେ
ବିଶ୍ୱସ୍ତତା ଖୋଜେ ।
ସେତେବେଳେ ସମୁଦ୍ର ବେଳାରେ ମତ୍ସ୍ୟକନ୍ୟା ରତିକ୍ରୀଡ଼ା ରତ,
ଚତୁର୍ଦ୍ଦିଗେ ହଳ ହଳ ପ୍ରେମିକ-ପ୍ରେମିକା,
ସେ କେଉଁ ଆଦିମ ଢେଉ ଚିତ୍ରିତ ଶାମୁକା ପରି
ମୋତେ ଦିଏ ଦୂରକୁ ଛିଞ୍ଚାଡ଼ି,
ଶୁଣିବାକୁ ମୃତ୍ୟୁର ଦୁନ୍ଦୁଭି ?

ତୁମେ କାହିଁ, ମୁଁ ବା କାହିଁ, ବ୍ୟବଧାନ ଦୁସ୍ତର ଆଜି ବି,
ମଝିରେ ଆମର ଖାଲି
ଯୋଜନ ଯୋଜନ ଧାନକ୍ଷେତ
ଲୋଟୁଛନ୍ତି ଜହ୍ନ ଆଲୁଅରେ ।
ବୁଦ୍‌ବୁଦର ଶୀତ୍କାର ଶେଷରେ ଅନ୍ଧାର ଚମକୁଛି ।

ମୋ ସ୍ୱପ୍ନ ଉପର ଦେଇ ରେଳଗାଡ଼ି ମାଡ଼ିଗଲା ପରେ,
ସବୁ ରଙ୍ଗ ବିବର୍ଣ୍ଣ ଓ ପାଣ୍ଡୁର ଯେତେବେଳେ,
ସୂର୍ଯ୍ୟ ମୁହଁରେ ପାଉଁଶ ବୋଳିବା ଶେଷ ହେଲେ

ମୁଁ କୃତାଞ୍ଜଳିପୁଟ ହୁଏ, କହେ ଡାକି—
''ଆଉ ଥରେ ଶୁଣ,
ଯଦି ଫେରିବାକୁ ମନହୁଏ କେବେ,
ପୃଥିବୀକୁ ଫେରିଆସ
ଆମର ଏ ପରିଚିତ ଘରେ,
ରୂପ, ରସ, ଗନ୍ଧ ସହ ପବିତ୍ରତା ସମର୍ପିବା ଲାଗି,
କିଏ ସେ ଜାଗର ଜାଳେ ପତିବ୍ରତା ଅଥବା ବିଟପୀ।''

ହଜି ନାହଁ ତୁମେ କିଛି, ଅଛ ତୁମେ ସେମିତି ସେମିତି,
ଦିଗନ୍ତରେ ଭରା ଦେଇ ଠିଆହୋଇ କରୁଣ ଠାଣିରେ,
କେବଳ ମୋ କବିତାରେ ସ୍ଥାନଟିକେ ପାଇବାକୁ ଆଜି।

* * *

# ମହାତ୍ମା ସ୍ମରଣେ

ଦାଣ୍ଡି ବହୁତ ଦୂର,
ବାଲି ଭାଙ୍ଗି, ଖରା ଧାସେ
ରହି ରହି ଚାଲିବାକୁ ହେବ,
ଯଦି ତୁମ ଡାକ ଶୁଣି କେହି ତୁମ ସଙ୍ଗେ ନ ଆସନ୍ତି,
ତେବେ,
ଏକା ଏକା ଚାଲିବ ପ୍ରଚୁର ।
ଯେ ମଣିଷ କାମ କରେ, ମାଟି ହାଣେ, ଫସଲ ଲଗାଏ,
ଦେହ ଝାଳ, ଦେହର ଲବଣ
ଢାଳି
ମାଟି ସଙ୍ଗେ ଲଢ଼ି ଲଢ଼ି ଶସ୍ୟ ଫଳାଏ,
ତା ଲାଗି ଦି'ରୁଆ ଲୁଣ,
କିଏ ଆଜି ଆଣିଦେବ ପୁଣ ?

ହେ ଭାରତମାତା, ତୁମେ ସ୍ୱାଧୀନତା କଣ୍ଢେଇଟି
ଦେଲ,
ସେତେବେଳେ ସେ ତ କାହିଁ, ସାରିଦେଇ ସବୁ କିଛି ଖେଳ,
ଧରା ଛାଡ଼ି କେଉଁଆଡ଼େ, କେଉଁ ସେ ସୁଦୂର ସାଗରେ
ଲୁଣ ମାପେ, ଖଟିବ ଜେହେଲ ।
ଆମେ ସବୁ ଏଡ଼ିକି ବେହେଲ,
ହାତୁ ଆମ ଲିଭି ନାହିଁ ରକ୍ତଧାରା ତିଳେ ହେଲେ ଆଜି,
ପିସ୍ତଲ ମୁହଁରୁ ଗୁଳି ସବୁବେଳେ ଛୁଟିବାକୁ ରାଜି,
ଭାଇର କଲିଜା ଫାଡ଼ି କେତେ କାହିଁ ଛିଟାଯାଏ ବ୍ୟାପି,
ରାବଣ ଆଜି ବି ଯୁଝେ ଶକ୍ତିଶେଳ ମିଳିନି ତଥାପି ।

ଆଜି ବି ଚୌଦିଗେ ଶୁଣେ ହାହାକାର ଦିଗନ୍ତ ବିଦାରେ,
ଅନ୍ନ ନାହିଁ, ବସ୍ତ୍ର ନାହିଁ, ଘର ନାହିଁ ରହିବାକୁ ଟିକେ,

ବାଡ଼ି ତୁମ କରି ଠୁକ ଠୁକ, ଫୁଙ୍ଗୁଳା ଦେହରେ ଥରେ
ଆସିବ କି ଫେରି ପୁଣି ଅଲାଜୁକ ଆମ ଏ ସଂସାରେ ?
ତୁମେ ଥିଲେ ଆମ ଦେହେ ବଳେ ବଳେ ଖୁନ୍ଦିହୁଏ ବଳ,
ତୁମର ବାଡ଼ିର ଶକ୍ତି ବନ୍ଧୁକଠୁଁ ଢେର ବଳୀୟାନ,
ଆମର ଯେତେକ ଶତ୍ରୁ, ଅବିଗୁଣ ଗାୟକଙ୍କ ଦଳ,
ଛାଏଁ ଛାଏଁ କେଉଁଆଡ଼େ ଛପିଯିବେ ହେବେ ତିରୋଧାନ ।

ତିନୋଟି ମାଙ୍କଡ଼ ଖାଲି
ଚୁପ୍‌ଚାପ୍ ଟେବୁଲ ସନ୍ଧିରେ
କହିବା, ଶୁଣିବା କିମ୍ବା ଦେଖିବାର ଦାୟିତ୍ୱ ବାହାରେ
ହତବାକ୍, ମୃତ ପୋର୍ସେଲିନ,
ଭାଗ୍ୟରବି ଦିଗନ୍ତେ ବିଲୀନ
ହେବା ପରେ
ଅନେକ ପାଣିର ସୁଅ ଯମୁନାରେ ବୋହି ତ ଗଲାଣି,
ଅନେକ ଜୁଆର ଆଉ ଭଟ୍ଟା ଆଜି ଦିଲ୍ଲୀର ସମାଜେ
ଦିଲ୍ଲୀ ନିକଟ ଆଜି, ଭାଗ୍ୟ ନେଇ ଖେଳନ୍ତି ଜୁଆଡ଼ୀ,
ପଶାଖେଳ ବେଶ ଜମିଲାଣି
ତୁମେ ନାହଁ, ଭଲ ତ ହୋଇଛି,
ଏ ସବୁ ତୁମକୁ କ'ଣ ସାଜେ ?

ଦାଣ୍ଡି ବହୁତ ଦୂର,
ସବୁ ଶକ୍ତି କରି ଚୂର
ଯେଉଁମାନେ ଗଢ଼ିଲେ ପୃଥିବୀ,
ମାଟି, ପାଣି, ପବନରେ ଜୀବନକୁ ଚକ୍ଷୁଦାନ ଦେଲେ,
ସେମାନେ କାହାନ୍ତି ଆଜି,
ଜନ୍ମଲଗ୍ନ ମୃତ୍ୟୁଲଗ୍ନ ହେଲେ
କିଛି କ'ଣ ଯାଏଆସେ ନାହିଁ ?
କେତେ କିଛି ପଡ଼େ ନାହିଁ ଭାଜି ?

ହେ ଫକୀର, ହେ ଲଙ୍ଗଳା ବୀର,
ଅନେକ ଟେବୁଲ ଟପି ଗୋଲ, ଲମ୍ବା ଏବଂ ଚଉକା,
ଆଜି ବି ତୁମର କଣ୍ଠ ସମୁନ୍ନତ,
ଶୁଭେ ତବ ଗିର।
ଜୀବନ ନଦୀର ତୀରେ ଟଳମଳ ଜାତିର ନଉକା,
ମଙ୍ଗ କିନ୍ତୁ ଧରିବାକୁ ହେବ
ସବୁ ଦୁଃଖ କରି ଅନୁଭବ।

ଦୈନ୍ୟ ଅଛି, ମୃତ୍ୟୁ ଅଛି
ବ୍ୟାଧ ପୁଣି ସଜାଡ଼େ ନାରାଚ,
ଏହି ମାଟି, ଏହି ଧୂଳି ଦିନେ ତାକୁ ଭଲ ଲାଗିଥିଲା,
ଶିଶୁର ଦରୋଟି କଥା, ଶୁଣି ଶୁଣି ପାକୁଆ ପାଟିରେ
ଠୋ ଠୋ ହୋଇ ଖୁବ୍ ହସିଥିଲା।
ହାତ ଧରି ଧରି ସେ ତ ଉଠି ଉଠି ପାହାଚ ପାହାଚ,
ଖେଳୁଥିଲା କେତେ ଲୁଚୁକାଳି, ଭୁଲିଯାଇ ଉଚ୍ଚ ଆଉ ନୀଚ।

ତୁମେ ଥିଲ ପିତା ପୁଣି ଧରିଥିଲ ମାତାର ମମତା,
ଅସୀମ ଧୈର୍ଯ୍ୟର ଖଣି, ଅପରୂପ କୋମଳ-କଠୋର,
ଦୁର୍ବାର ତୁମର ତେଜ ଖୋଜିଥିଲ ସବୁଠି ସମତା
କ୍ଷୀଣ ଦେହେ କେତେ ତୁମ ଜୋର ?
ଯୁଦ୍ଧ ତ ସରିନାହିଁ
ଦୂରେ ଶୁଭେ ଶତ୍ରୁର ନିନାଦ,
ପ୍ରିୟ ଏ ଭାରତଭୂମି ରକ୍ଷା ଲାଗି ସାଜିଛ ଦଧୀଚି,
ହାଡ଼ ଦେଇ, ଭୁଲି ଅପରାଧ।
ଅଛି କ୍ଷୁଧା, ଅଛି ବ୍ୟାଧି
ବନ୍ୟା ତ ଏବେ ବି କରାଳ,
ରଖ ଉଙ୍ଗା ହେ ମଙ୍ଗୁଆଳ !

* * *

# ପୂର୍ଣ୍ଣମୀ, ମୋ ରକ୍ତ ଭିତରେ

ଦୁଇ ଗୋଡ଼ ସନ୍ଧି ଦେଇ ଘୋଡ଼ାଟା ଖସିଗଲା ପରେ
ଧୋବାଘର ଲୁଗା ପରି ଦେହ ମୋର ନିସ୍ତେଜ ସ୍ତୂପରେ
ପରିଣତ ହୁଏ। ମୁଣ୍ଡଟା ଗଡ଼ିଯାଏ ଉଚ୍ଛିଷ୍ଟ ପଇଡ଼ ପରି
ରାସ୍ତାକଡ଼ର ନାଳ ଭିତରକୁ। ସେତେବେଳେ ଦୁଃଖ
ଗୋଟାଏ ଅସ୍ଥିର ଚଢ଼େଇ, ମୋ ଛାତିର ପଞ୍ଜୁରି ଭିତରେ
ଡେଣା ବାଡ଼ଉଛି। ମନର ମଲାଟରୁ ସୂର୍ଯ୍ୟସ୍ନାତ ଧରିତ୍ରୀର ଛବି
ପୋଛି ହୋଇଗଲା। ମାତାଲ ସାନ୍ତାଳ ରମଣୀ ଭଳି ଚାରିଆଡ଼େ
କଳା ମଚ ମଚ ଅନ୍ଧାର। ଆଗିଣା ପିଠା ରଙ୍ଗର ସୂର୍ଯ୍ୟ ବୁଡ଼ିଯାଇଛି
ଅନେକ ବେଳୁ।

ଯେଉଁ ଜହ୍ନ ଦିନେ ମ୍ୟୁନିସିପାଲିଟି ଜମାଦାର ଭଳି ରାସ୍ତାକଡ଼ର
ଜଞ୍ଜାଳ ତନଖି କରୁଥିଲା, ସେ ଆଜି ଏକ ପର୍ବତ ଚଢ଼ାଳୀ,
ପାହାଡ଼-ଚୂଡ଼ାରେ ପୋତୁଛି
ପତାକା। ଚାରିଆଡ଼େ ଜହ୍ନ ଆଲୁଅର ତୀବ୍ର ନିବିଡ଼ ଅତ୍ୟାଚାର।
ମୋର ପ୍ରତିଟି
ଲୋମକୂପ ସିକ୍ତ ଅବିଶ୍ରାନ୍ତ ଜୋଛନାରେ। ଜଙ୍ଗଲର ଗଛଲତା ଜହ୍ନ
ଆଲୁଅରେ ବୁଡ଼ବୁଡ଼। ସେମାନଙ୍କର ପିଚ୍ଛିଳ ପତର ଦେହରୁ ଚନ୍ଦ୍ରାଲୋକ
ଖସି ଖସି ପଡ଼ୁଛି ତିର୍ଯ୍ୟକ ଧାରାରେ। ନୀଳଗାଇର ବିଷଣ୍ଣ ଚିତ୍କାରରେ
ଭରିଯାଉଛି ଉପତ୍ୟକା। ପାହାଡ଼ମାନଙ୍କର ଧ୍ୟାନ ଭାଙ୍ଗିନାହିଁ ତଥାପି।
ସେମାନେ ସମର୍ପିତ ତପସ୍ୟାରେ ମୌନ। ମୋ ମନର ଗହନରେ
ଏ ଜହ୍ନ ଠିକ ଗୋଟାଏ ଆଫ୍ରିକୀୟ ସିଂହ-ଶିକାରୀ। ଘନ ଘାସର
ପ୍ରାନ୍ତର
ଡେଇଁ ଛପି ଛପି ଆଗେଇ ଚାଲିଛି– ହାତରେ ତାର ଦୀର୍ଘ
ଚକ୍ ଚକ୍ ବର୍ଚ୍ଛା।

ମୁଁ କିନ୍ତୁ ତାକୁ ଦେଖିବାକୁ ଚାହିଁଥିଲି ଏକ ସଦ୍ୟ ବିଧବା
ଭଳି, ମହାନଦୀ ପାଣିରେ, କାର୍ତ୍ତିକ ମାସରେ, ପକାଉଛି ବୁଡ଼।

* * *

# ଦଗ୍‌ଧ ଡାୟରୀ

ବେଦନା ମୋହର କ୍ଳାନ୍ତ ଡେଣାର ଚିଲ,
ବାହୁନେ ପରାଣ, ବାହୁନଇ ଆଖି ନୀର,
କରୁଣ ବିଜନ ଏ କେଉଁ ନିର୍ବାସନ,
କାହିଁ ପ୍ରାନ୍ତର, ଆମ୍ବତୋଟା ବଣ-ଚିଲ,
ସାଗରର ଢେଉ ଶୁଣେନା ମନର ଗିର।

ଅନ୍ତବିହୀନ ନିଷ୍ଠୁର ଗୌରବେ,
ଦଗ୍‌ଧ ଜୀବନ, ହତାଶା ଦୀର୍ଘଶ୍ୱାସ,
ଭୁଲିଯାଇ ସବୁ ଟୋପାଏ ଶାନ୍ତି ପାଇଁ,
ସ୍ୱଚ୍ଛଳତାର ବିମୁଗ୍‌ଧ ଗୌରବେ,
ଭରିଛି ପରାଣ, ଘଟିଛି ପୂର୍ଣ୍ଣଗ୍ରାସ।

ଚୌଦିଗ ବ୍ୟାପୀ ବିରହର ମରୁଭୂମି,
ଓଠରୁ ତୁମର ସର୍ବନାଶ ଝରେ,
ବାହୁଲତା ଯେହ୍ନେ ଯୁଗଳ ଭୁଜଙ୍ଗିନୀ,
ହୃଦୟେ ଭରିଛି ହାହାକାରର କୃମି,
ବିଚ୍ଛେଦ ଖାଲି ବିଚ୍ଛେଦରେ ଇ ସରେ।

ବ୍ୟର୍ଥତା ମୋର ଊଷର ମରୁର ବାଲି,
ଯେଉଁଆଡ଼େ ଚାହେଁ ଘେରିଛି ଅନ୍ଧକାର,
କୂଳହରା ଏକ ଦଦରା ବୋଇତ ମୁହିଁ,
ବନ୍ଦରହୀନ ସାଗରେ ସାଗରେ ଖାଲି,
ଘୂରି ବୁଲିବାରେ ପାଇଛି ଯା ଅଧିକାର।

* * *

# ମାଗୁଣି

ମୋତେ ତୁମ ମନର ଖଣିର ଅନ୍ଧାରରେ ଓହ୍ଲାଇବାକୁ ଦିଅ,
ମୋ ପାଦ ଛୁଇଁ ମାଟି,
ମୁଁ ଖୁବ୍ ସନ୍ତର୍ପଣରେ ଓହ୍ଲାଇବି ଧୀର ଅଥଚ କ୍ରମାଗତ ଭାବରେ
ପାହାଚ କାଟି କାଟି ।
ସେତେବେଳେ ମୁଁ ହୁଏତ ହରାଉଛି ନୀଳ ଆକାଶର ଆଖିଠାର,
ହଳଦୀବସନ୍ତ ଚଢ଼େଇ, ଆଉ
ଇତସ୍ତତଃ ଉଡ଼ିବୁଲୁଥିବା ପ୍ରଜାପତି, ଯେଉଁମାନେ ଜାଣନ୍ତି ନାହିଁ
ମାଛ ଦର
କିମ୍ବା ବଜାରର ଭାଉ ।
ମୁଁ ତୁମ ହୃଦୟ-ସମୁଦ୍ରର ଅତଳ ଗଭୀରରେ ମୁକ୍ତାକ୍ଷିକାରୀ
ପରି ବୁଡ଼ି ବୁଡ଼ି
ମୁକ୍ତା ଗୋଟାଇବି ।
ସେଠି ପ୍ରବାଳର ଆଶ୍ଚର୍ଯ୍ୟ ବସତି, ଯେଉଁଠି ଜୁଆର ଆସେ
ଅବ୍ୟର୍ଥ ଅଲଙ୍ଘନୀୟତାରେ ଆଜି ବି ।

ମୋତେ ତୁମର ହାତ ଧରିବାକୁ ଦିଅ ମୋ ହାତମୁଠାରେ, ଯାହା
ଠିକ୍ ଗୋଟାଏ ସାନ ଚଢ଼େଇ ପରି ସ୍ୱେଦ, କୌତୂହଳ, ଲଜ୍ଜାରେ
ଥାହା ଥରୁଛି ।

ତୁମର ଓଠ ଦିଓଟି ଦିଅ ମୋତେ— ରୁଦ୍ରାକ୍ଷ ରଙ୍ଗର ଦୁଇ ଓଠ,
ଭ୍ରୂଲତା ଓ ଆଖିପତା, ଗ୍ରୀବା, ବାହୁ, ବିବିଧ କବଚ ।
ମୁଁ ମାଗୁଛି ସ୍ତନଯୁଗ ମୋ ହାତର ପାପୁଲି ଭିତରେ,
କରୁଣ ଶଙ୍ଖର ପରି ଶିହରିତ ବିପୁଳ ଶୀତରେ,
କେଶର ସ୍ନିଗ୍ଧତା ଦିଅ, ସେଥିରେ ମୁହଁ ରଖି କାନ୍ଦିବାକୁ
ଦିଅ ଅବସର
ଏବଂ
ସାଗରରେ ଜଳି ଉଠୁଥିବା ହଠାତ୍ ଫସ୍‌ଫରସ୍ ଭଳି ପ୍ରେମ ଦିଅ
ଆଉ କିଛି ଆଲିଙ୍ଗନର ନିବିଡ଼ତାର ବର ।
* * *

# ଭଙ୍ଗା ମାସ୍ତୁଲ

ପାଚିଲା ପତର ପରି ତୁମେ ମୋର ହୃଦୟରୁ ଝରିଗଲ ପ୍ରାୟ
ନିଃଶବ୍ଦରେ,
ଶ୍ରାବଣ ସନ୍ଧ୍ୟାରେ ।
ସେତେବେଳେ ପବନମାନେ ହାହାକାର କଲେ, ଗଲା— ଗଲା— ଗଲା,
ତୁମର ଦେହର ଛାଇ ମୋ ରକ୍ତ ଭିତରେ ଖେଳିଲା
ତଥାପି...

ପେଚାର ଡେଣାରେ ଚଢ଼ି ଜହ୍ନ ଆସେ ବାଡ଼ିଦୁଆରରେ,
ମୋ ଜଳାକବାଟି ବାଟେ ଉଙ୍କିମାରେ ପ୍ରେମିକାର ପରି,
ଧୂଳି ଭଳି ଜହ୍ନରେଣୁ ଝରେ,
ଆମ୍ବତୋଟା, ବିଲ ଓ ଗୋଚରେ,
ଅନେକ ଜୋଛନା କିନ୍ତୁ ଲୁଟି ନେଲେ ମୂଷା ଓ ବାଦୁଡ଼ି,
ଭରିଲେ ତାଙ୍କର ଗାତ ହଣ୍ଡା ହଣ୍ଡା ଚନ୍ଦ୍ରକିରଣରେ ।
ବାବନାଭୂତର ଭଳି ମୁଁ ବୁଲିଲି ବହୁ ବାଟ,
ଯୋଜନ ଯୋଜନ ଦୂର ଜନହୀନ ଅସହ୍ୟ ସହରେ,
ଯେଉଁଠି, ସୁପ୍ରଶସ୍ତ ଦିବାଲୋକେ, ଯେ କୌଣସି ମୁହୂର୍ତ୍ତରେ,
ବଡ଼ିଖୁଣ୍ଟ ଫାଶିଖୁଣ୍ଟ ହୁଏ ।

ପ୍ରେମକୁ ମୁଁ ଭଲ ପାଇଥିଲି,
କେଉଁ ଏକ ବିଷଣ୍ଣ ସନ୍ଧ୍ୟାରେ,
ସୂର୍ଯ୍ୟାସ୍ତର ଅବିର ମୁହଁରେ
ବୋଳି ହୋଇ ଠିଆହେଲ ତମେ ।
ବେଦମନ୍ତ୍ର ଉଚ୍ଚାରିଲେ ପେଚା ଓ ବାଦୁଡ଼ି,
ଚନ୍ଦ୍ର ଥିଲା ସାକ୍ଷୀ
ଏଡ଼ିକି ନିରିମାଖୀ— ହାୟ !

ସ୍ମୃତିକୁ ତ ହୁଏ ନାହିଁ ଭୁଲି,
ସେମାନେ ଆସନ୍ତି ଠିକ ଜହ୍ନ ପରି କାଠଯୋଡ଼ି ବାଲି,
ଖେଳିବାକୁ ଅଳପ ପାଣିରେ ।

ହଠାତ୍ ବାଲିରେ ଝଡ଼,
କୃଷ୍ଣଚୂଡ଼ା ଦଳି ହୋଇଯାଏ,
କାଳିଂଶି ଉଠଇ ମାତି ସୀମାହୀନ ବଙ୍ଗୋପସାଗରେ ।

ତୁମକୁ ତ ପାରିନାହିଁ ଭୁଲି,
ମୋ ଛାତିର କବରରୁ ତୁମରି କଙ୍କାଳ
ଖୋଳି ଖୋଳି,
ମାସ ବର୍ଷ ବିତି ଗଲା ଚାଲି ।

* * *

# ସାବୁନ

ମୋ ହାତ ମୁଠାରେ ସାନ ବାଲିଗରଡ଼ାଟିଏ, ତାକୁ ଘଷିଲେ ଆଲାଦୀନ ପ୍ରଦୀପର ଦୈତ୍ୟ ଆସି ଠିଆହୁଏ । କହେ– 'ମୁହୂର୍ତ୍ତକ ମଧ୍ୟରେ ତୁମର ଦେହ ଏବଂ ଆତ୍ମାକୁ ମୁଁ ଶୁଦ୍ଧ କରିଦେବି ।' ମୋ ହାତର ମାର୍ବଲ ଖଣ୍ଡଟିକୁ ମୁଁ ମନ୍ତୁରିଛି– ପାଣିର କ୍ଷଣିକ ସାନିଧ୍ୟରେ ସେଥିରୁ ନିର୍ଗତ ହେଉଛି କୁଢ଼ କୁଢ଼ ମେଘ । ମୋ ଗାଧୁଆଘରର ଖିଡ଼ିକି ପର୍ଯ୍ୟନ୍ତ ଏହି ମେଘର ଆସ୍ତରଣ ସଞ୍ଚରି ଯାଉଛି । ମୋ ହାତପାପୁଲି ଭିତରେ ହଜଦୀବସନ୍ତ ଚନ୍ଦ୍ରେଇ । ଗାଧୁଆ ଘରେ ଅଚାନକ ବସନ୍ତ ଆସିଛି । ମୋ ଦେହର ଚାରିପଟେ ମଳୟ ।

ମୁଁ କସ୍ତୁରୀମୃଗର ନାଭିଖଣ୍ଡ ମୁଠେଇଛି । ଆଉ କନ କନ କରି ଅନାଉଛି ଚାରିପଟକୁ- ବିପର୍ଯ୍ୟସ୍ତ ନଗ୍ନତାର ଛନକାରେ । ଯେତେବେଳେ ତାହା ଏକ ମେଘ-ମୁକ୍ତ ନକ୍ଷତ୍ର ଭଳି ରହି ରହି ଝଟକୁଛି । ମୋ ହାତରେ ନରମ ଲହୁଣି ମୁଣ୍ଡାଟିଏ- ମସୃଣ ଏବଂ ଦ୍ରବ । ଯାହାକୁ ମୁଁ ଆନ୍ଦୋଳିତ କରୁଛି ଥରକୁ ଥର ।

ଗାଧୁଆଘରର ଠଣାରେ ଖଣ୍ଡେ ଚନ୍ଦନକାଠ । ପାଣିର ଆଶ୍ରା ପାଇଲେ ସେ ଫୁଲିଉଠି ପ୍ରଗଲ୍‌ଭ ହୁଏ । ମୋ ଦେହକୁ ସାପ ପରି ବେଷ୍ଟନ କରି କ୍ରମେ କ୍ରମେ ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଲେହନ କରେ । ମୋ ହାତରେ ପୁରୀର ସମୁଦ୍ର-- ନୀଳ ରଙ୍ଗର ଢେଉ ଢେଉକା ଫେଣରେ ଗାଧୁଆଘର ଚହଲି ଉଠୁଛି । ମୋର ପ୍ରତି ଲୋମକୂପ ବୁଦ୍‌ବୁଦ୍‌ର ଶୀତ୍କାରରେ ସିକ୍ତ । ଏକ ବେଗବାନ୍ ଅଶ୍ୱର ମୁହଁରେ ଜମି ଉଠୁଥିବା ଫେଣପୁଞ୍ଜ

ପରି ମୋ ଆଙ୍ଗୁଠି ଫାଙ୍କ ଦେଇ ଫେଣରାଜି ଝରି ଝରି ପଡୁଛି । ଏଥର ମୁଁ ଚଉକା ଝଟିକଟିକୁ ମୋର ସର୍ବାଙ୍ଗରେ ଘଷିବି ଛାତି, ଗୋଡ଼, ପେଟ ଆଉ ଜାନୁସନ୍ଧିରେ ଏକ ଉଜ୍ଜ୍ୱଳ ମାଛ ପରି ସେ ପହଁରି ବୁଲୁଥିବ । ଓଦା ଗୋଲାପର ପାଖୁଡ଼ାରେ ଭରିଯିବ ମୋର ସମଗ୍ର ଶରୀର । ତା'ପରେ ମୋର ଦେହ ଏବଂ ହୃଦୟକୁ ଆପ୍ଳୁତ କରିବି ଧାରାସ୍ନାନରେ। ସବୁ ପାପ ଓ କଳଙ୍କ ଧୋଇ ହୋଇ ଯିବ। ସେତେବେଳେ ମୋ ହାତମୁଠାରୁ ଏକ ପିଚ୍ଛିଳ ବେଙ୍ଗ ପରି ସେ ହଠାତ୍ କୁଦିପଡ଼ିବ ଗାଧୁଆଘରର ନାଳ ମୁହଁକୁ। ମୁଁ ପୁଣି ତାକୁ ଗୋଟାଇ ନେବି ତାର ପୁରୁଣା ଫରୁଆର ଅସହାୟତା ଭିତରକୁ।

* * *

# ଦିନେ ଦିନେ

ଦିନେ ଦିନେ ମନ ହୁଏ ରମଣରେ ମତ୍ତ ହେବା ପାଇଁ,
ଯୋଜନ ଯୋଜନ ବ୍ୟାପୀ ଆଦିଗନ୍ତ ବିସ୍ତାରିତ ଯୋନି,
ଇଚ୍ଛା ହୁଏ ଛୁଇଁବାକୁ କୁଢ଼ କୁଢ଼ ସ୍ତନର ପାହାଡ଼
ସେତେବେଳେ ଲୋକେ ମୋତେ ଧିକ୍କାରିବେ—
"ଦେଖ ଦେଖ ଯାଉଅଛି କେଡ଼େ ସେଟା ଲମ୍ପଟ ପୁରୁଷ !"

ଚରିତ୍ରକୁ ବଢ଼ାଇଲି ଅଲିଅଳ ଫୁଲଗଛ ପରି,
ଖରାଧାସ ବାଜେ ନାହିଁ, ବର୍ଷା କିମ୍ବା ଶୀତର ଗ୍ରାସରୁ
ରଖିଲି ଆବୋରି ତାକୁ, ସିନ୍ଦୁକରେ ଢଉମୁଦ କରି,
ହଠାତ୍ କେଉଁଠୁ ଏକ ଜିଦ୍‌ଖୋର ଛେଳିର ଜିଭରେ
ସବୁ ଫୁଲ ମଳିହୋଇ ସତୀତ୍ୱର ବାଡ଼-ବତା ଭାଙ୍ଗେ ।

କିଏ ଅବା ଜାଣିଥିଲା ପ୍ରେମ ଠାରୁ ବଳୀୟାନ୍
ରକ୍ତେ ଅଛି ମହାବଳ ବାଘ,
ପର୍ବତଶିଖରୁ ଡିଏଁ, ଚିଲା ମାରେ ନିଷେଧର ନଦୀ,
ବେଶ୍ୟାର ପଲଙ୍କ କିମ୍ବା ଗାଁ-ଭୁଆସୁଣୀର କୋଳରେ
ରୁଧିରାକ୍ତ ପଞ୍ଝା ତାର ଘଷେ ।

ମନହୁଏ ଦିନେ ଦିନେ ବେହିସାବୀ ମଦ ପିଇ
ପୂରାପୂରି ହେବାକୁ ମାତାଲ,
ଗୋଧୂଳି ରଙ୍ଗର ମଦ, ଢାଳି ଢାଳି ଦୁଃଖର ଗିଲାସେ,
ମୁଁ ଚାଲିବି ଟଳି ଟଳି ଯେବେ,
ମୋତେ ଦେଖି ଯୁବତୀଏ ଧାଇଁଯାଇ ଦୁଆର କିଳିବେ ।




ସେତେବେଳେ ଭୁଲିଯିବି ତୁମର ଦେହର ଘ୍ରାଣ,
ଓଠର ପାଖୁଡ଼ା ଅବା ଆଖିପତା,
ସ୍ତନର ବିସ୍ମୟ,
ଆଉ ଏକ ଛାତି ଚିରି ଖୋଜିବାକୁ ତୁମର ହୃଦୟ
ଭାରି ମନ ହୁଏ ।

ଦିନେ ଦିନେ ସନ୍ଧ୍ୟା ଆସେ ଠିକ୍ ଏକ ଭଡୁଆର ପରି,
ସ୍ମୃତିକୁ ସେ ଫୁସୁଲାଏ କାନ୍ତିମୟ ସ୍ୱର୍ଗର ଗଳିରେ,
ରାତିର ଚଟାଣ ଭରି ହାହାକାର ଗଡ଼ିଯାଏ କେତେ,
ଲେଲିହାନ ଅନ୍ଧାରରେ ଖୋଜିବାକୁ
ଅସ୍ଥିର ନଖର କ୍ଷତ, ଧୂସର ବେଦନା ।

* * *



## ଭାନୁଜୀ ରାଓ

ଓଡ଼ିଆ କବିତାର କାଳଜୟୀ କଣ୍ଠସ୍ୱର–ଭାନୁଜୀ ରାଓ।

ଭାରତବର୍ଷରେ କବି ଭାନୁଜୀଙ୍କ ସମଧର୍ମୀ ପ୍ରତିଭାଟିଏ ବିରଳ ନିଶ୍ଚୟ। ତାଙ୍କ କବିତାରେ ଜୀବନ ପ୍ରତି ଏକ ନୂତନ ନିରୀକ୍ଷା ସ୍ପଷ୍ଟ ଉପଲବ୍ଧ। ପୁରାତନ ନୈତିକତା, ଗତାନୁଗତିକତାର ଶଗଡ଼ ଗୁଳାରୁ ସେ ମୁକ୍ତ କରିଛନ୍ତି ଓଡ଼ିଆ କବିତାକୁ। ଏଥିପାଇଁ ତାଙ୍କୁ ମୁକାବିଲା କରିବାକୁ ପଡ଼ିଛି ନାନା ବିବାଦ ଓ ବିତର୍କର।

'ବିଷାଦ ଏକ ଋତୁ'– ସେଇ ନୂତନ ନିରୀକ୍ଷାର ନାମାଙ୍କନ।

